"The ascent is slow and long is Time
Yet shall Truth grow and harmony increase:
The day shall come when men feel close and one.
Meanwhile one forward step is something gained,
Since little by little earth must open to heaven
Till her dim soul awakes into the light".

Sri Aurobindo (Collected poems)

ପ୍ରକାଶକ :
ଡକ୍ଟର ବିଜୟ କୁମାର ନନ୍ଦ
ବକ୍ସିବଜାର, କଟକ

ମୁଦ୍ରକ :
ଅପର୍ଣ୍ଣା ପ୍ରିଣ୍ଟର୍ସ, ସୂତାହାଟ, କଟକ - ୧

ପ୍ରଥମ ସଂସ୍କରଣ :
ଫେବୃୟାରୀ, ୧୯୯୪

ମୂଲ୍ୟ : ଟ. ୩୫ /-

ମହାନଦୀ ବିହାର
୨୯।୧୦।୮୬

ସ୍ନେହର ମିନି,

'ମଧୁରାୟଣ'ଠାରୁ 'ବିଳଂବିତ ଲୟ' ପର୍ଯ୍ୟଂତ ତୋର ସମସ୍ତ ରଚନା ମନଧ୍ୟାନ ଦେଇ ଏକାଧିକବାର ପଢ଼ିଛି। ପ୍ରତି ଥର ମତେ ଲାଗିଲା – ଏଇ କୌଣସିଟିର ବିଚାରବିମର୍ଶ ହୋଇନପାରେ, କେବଳ ଅନୁଭବସୂତ୍ରରେ ପ୍ରତ୍ୟେକଟିରୁ ଆହ୍ଲାଦର ଓ ତୃପ୍ତିର ସ୍ୱାଦ ଭୋଗ କରିହୁଏ। କବି ଚିଲିକାର ବହିଃସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ କହିଥିଲେ ନା ? – ବଚନ ବିଷୟ ନୁହଇ ଏ ଛବି / ହୃଦ ସେ କେବଳ ପାରେ ଅନୁଭବି। ଠିକ୍ ସେଇ ଅବସ୍ଥା ଏଇଠି। ମାତ୍ର ପାର୍ଥକ୍ୟ ହେଉଛି – ତୋର କାବ୍ୟିକ-ପ୍ରବଂଧରେ ରାଶିରାଶି ଛବି ହୋଇଛି ଭାବଚିତ୍ର, ଭାବଛବି – କିଂତୁ ପୂରାପୂରି 'ଏ ଛବି' ନୁହେଁ। ଯେହେତୁ ତା ସବୁ ଗଭୀର ଭାବେ ବୈୟକ୍ତିକ, ଅଭ୍ୟଂତରୀଣ – ଭାବ ଓ ଅନୁଭବମାନ ତହିଁରେ ବର୍ଣମୟ ଏବଂ ବାଙ୍ମୟ ହୋଇଯାଇଛି। ଅଧିକଂତୁ ପାଠକାଳୀନ ନୀରବତା ବି ସ୍ୱରମୁଖର ଓ ଗୀତିମୂର୍ଛିତ ହୋଇଯାଇଛି ମୋ ମନଭିତରେ। ମୁଁ ଅନୁଭବ କରୁଛି, ତୋର ଏଇ ଚମତ୍କାର ଗଭୀର ରଚନାବଳୀର ଯଥାର୍ଥ ପାଠକ ହେବ 'ହୃଦ' ବା ହୃଦୟ। ଅନୁଭବ ହିଁ ହେବ ପାଠର ଉଚ୍ଚାରଣ।

ମୁଁ ଆହ୍ଲାଦିତ ଯେ ତୋର ଏଇ ଗଦ୍ୟପୋଷାକୀ ଅରଣ୍ୟକାଂଡ଼ ଓ ବନପର୍ବମାନଙ୍କର ସ୍ୱଛଂଦ ଏବଂ ସ୍ୱଭାବସୁଂଦର ଶୋଭାରାଶି ଭିତରେ ମତେ ବହୁତ ବୁଲାଇଛୁ ମର୍ତ୍ତ୍ୟରୁ ସ୍ୱର୍ଗଯାଏ, ଦକ୍ଷିଣରୁ ଉତ୍ତରରେ କୁବେରପୁରୀ ଯାଏ – ଅନେକ ତୀର୍ଥ, ନଦୀ, ବନ, ଆଶ୍ରମ। ଅଧିକଂତୁ, କେବଳ ଦେଶଦୃଷ୍ଟିରୁ ନୁହେଁ, କାଳସୂତ୍ରରେ ବି ଏ କାଳରୁ ଦ୍ୱାପର ପର୍ଯ୍ୟନ୍ତ, ତ୍ରେତା ପର୍ଯ୍ୟଂତ, ସତ୍ୟ ପର୍ଯ୍ୟଂତ। କାଳରୁ ବହୁ କାଳାଂତର, ବହୁ ମନ୍ୱଂତର। ଏବଂ ଭେଟିଛି ମୋର ମନୋନୀତ ପାତ୍ରମାନଂକୁ – ଚରିତ୍ରମାନଂକୁ – ଦ୍ରୌପଦୀ, ଅହଲ୍ୟା, ରାଧା, କୃଷ୍ଣ ବା ଶିବଂକୁ। ଏ ସମସ୍ତଂକ ନୂତନ ନୂତନ ରୂପ, ବ୍ୟକ୍ତିତ୍ୱ ନବୀକୃତ ଓ ବର୍ଣଭାସ୍ୱର। ଚମତ୍କାର ଓ ଚିତ୍ତହାରୀ।

କିଂତୁ ଆହୁରି ଅନେକେ ତୋ ମନକୁ, ହୃଦୟକୁ ଓ ସ୍ୱୀକାରକୁ ଅପେକ୍ଷା କରି ବସିଛଂତି, (କାଂଚିକାବେରୀ କାବ୍ୟର) ମାଣିକ, (ଭାଗବତର) ରଂତିଦେବ, (ରାମାୟଣର) ସୀତା, ଉର୍ମିଳା, (ମହାଭାରତର) ଗାଂଧାରୀ ବା ଧୃତରାଷ୍ଟ୍ର – ଏମିତି ଆହୁରି କେତେ।

ତୋର
ଶୁଭାକାଂକ୍ଷୀ
ବେଣୁଧର ରାଉତ

# ସୂଚୀ



□ □ □

# ବିଲଂବିତ ଲୟ

ଏମିତି କି ଉତ୍ତର ଖୋଜୁଛି ଯେ ପ୍ରଶ୍ନରେ ହିଁ ଶେଷ ହୋଇଗଲି ! ଆଉ କିଛି ପ୍ରଶ୍ନ ପଚାରି ପାରିବି ନାହିଁ ଏବଂ କାହାରି କେଉଁ ପ୍ରଶ୍ନର ଉତ୍ତର ଦେଇ ପାରିବି ନାହିଁ ।
ଚେତନାର ସ୍ଥିରବିନ୍ଦୁରେ ସବୁ ଅଖଣ୍ଡ ଘନୀଭୂତ ଏକ ହୋଇ ରହିଯାଇଛନ୍ତି । ଏ ଉପଲବ୍ଧିର ସତ୍ୟତାକୁ ମୋ ସମେତ ଆଉ କେହି ପ୍ରଶ୍ନ କରିପାରିବେ ନାହିଁ ।
ହୁଏତ, ତୁମକୁ ଭେଟିନଥିଲେ ମୁଁ କେଉଁ ପ୍ରଶ୍ନବାଚ୍‌କତାକୁ ଭେଟିନଥାନ୍ତି । ଉତ୍ତର ଖୋଜିବା ଜାଣିନଥାନ୍ତି ।
ତୁମକୁ ଜାଣିନଥିଲେ ନିରର୍ଥକ ଶବ୍ଦମାନଙ୍କୁ ଏମିତି ଭାବମୟ ହୋଇ ଝଲିଉଠିବା ଦେଖିନଥାନ୍ତି ।
ଏବେତ ଶବ୍ଦମାନେ ଅଣାୟତ୍ତ । ଅର୍ଥମାନେ ଅପହଂଚ । ଭାବମାନେ ରୂପହୀନ ଧ୍ୱନିର ତରଂଗ । ଏବେତ ଥାଇ ଥାଇ, କାନପାଖେ ସ୍ୱର ଶୁଭିଯାଏ । ଛାତିରେ ମୃଦଙ୍ଗ ବାଜେ । ପାଦ ଦୁଇ ଥରିଉଠି ସ୍ଥିର ରହିଯାନ୍ତି ।
ଆଖି ଆଗ ଦୃଶ୍ୟ ହୁଏ ନାହିଁ, ଅଥଚ ଆକାଶ ଓହ୍ଲାଇଆସେ ଛାତିକୁ ଓ ସମୁଦ୍ର ଅବୋରିଯାଏ ସାରା ଦେହ ।
ଏବେତ, ତୁମେ କେଉଁଠାରେ ବୋଲି ମୋର ଖୋଜା ପଡ଼େ ନାହିଁ ।
ତୁମେ ମୋର ସେପରି ପାଖରେ ଥାଅ, ଦୂରତ୍ୱର କିଛି ମାତ୍ର ବୋଧ ରହେ ନାହିଁ ।
ଆକାଶର ନେଳି ଆଉ ଫୁଲର ବାସ୍ନାରେ ତୁମେ ଭରିରହିଥିବା ବେଳେ ନାହିଁ ବୋଲି ମନେହୁଏନାହିଁ ।
ତୁମେ ସେପରି ପାଖରେ ଥାଅ, ହୃଦୟରେ ଆଉ କିଛି ଖାଲି ଜାଗା ନାହିଁ ।
ଏବେ ତ ମୁଁ କୁଆଡ଼େ ବି ଯାଉନାହିଁ । ନିଜ ପାଖେ ଚୁପ୍‌ଚାପ ବସିଛି ଏବଂ ଆକାଶର ପ୍ରତୀକ୍ଷାରେ ଗୋଟାପଣ ମିଳାଇବା ପରେ ଏବେ ମୋ ସମୁଦାୟତ୍ୱ ଏକ ଉଜ୍ଜ୍ୱଳ ନୀଳବିହ୍ୱଳ ସ୍ମୃତି ପାଲଟିଛି ।
କଳ୍ପକୁ ନିମେଷ କରି, ରାତିକୁ ଉଜାଗରର ପଲକଟି କରି ପୁହାଇଦେଇଛି । ନାଁକୁ ତୁମର ଛାତିତଳର ଧାଡ଼ିଏ କବିତା କରି ଅହରହ ପଢ଼ିଚାଲିଛି ।
ମୁଠାଏ ନାଁ ଅଜଣା ଫୁଲର ବାସ୍ନାରେ ଦିନରାତି ବିଭୋର ରହିଛି ।
ଜହ୍ନରାତି, ଉଦାସୀ ସଂଜ, ସକାଳ ଖରା କି ନୀଳ ଦ୍ୱିପ୍ରହର— ସବୁ ଏବେ ତୁମ ସ୍ମୃତିରେ ଏକାକାର ।
ପ୍ରେମ ମାନେ ତ ସ୍ମୃତିରେ ଅଧିକାର !

ଏଠି ତ ପାଣିପବନରେ ବି ତୁମରି କଥା। ଯୁଆଡ଼େ ଚାହିଁଲେ ନେଳିରଂଗ। ଆକାଶ କି ନଦୀଜଳ– ସବୁ ତୁମ କାନ୍ତିର ଝଲମଲ ତରଙ୍ଗ। ସବୁ ଲହରୀ ତୁମକୁ ଭେଟିବା ବେଳର ଚପଳ ଆବେଗ।

ଅବଶ୍ୟ, କିଛି ବି ଠିକଣା ନାହିଁ ଦେଖାସାକ୍ଷାତର। ନିର୍ଧାରିତ ନୁହେଁ କିଛି ସ୍ଥାନ ବା ସମୟ। ହୁଏତ କ୍ଷଣକ ପରେ, କିଂବା ଯୁଗାନ୍ତରେ... ଜଣାନାହିଁ।

ତଥାପି 'ଦେଖାହେବ' – ଏଇ ମାତ୍ରକ ଅଂଗୀକାର ତୁମ ମୋ ସମଗ୍ର ଭବିଷ୍ୟତକୁ ଠିଆକରିଦିଏ ସବୁ ସଦ୍ୟ ମୁହୂର୍ତ୍ତରେ।

ତୁମେ ଆସିବା ପାଇଁ ତ ଜହ୍ନରାତି ଲୋଡ଼ାନାହିଁ। ଘୋର ଅନ୍ଧକାରରେ ବି ତୁମ ପଦଧ୍ୱନିରେ ମୋ ଛାତି ଦୁଲୁକିଯିବ। ଆଖିରେ ଚନ୍ଦ୍ର ତାରା ହାଲୋଳିଯିବେ। ବଂଦ କିଳିଣୀମାନ ଫିଟିଯିବେ, ଆକାଶର ଅନ୍ଧାରକୁ ବାଟ ଖୋଲିଯିବ। ଶବ୍ଦମାନେ ଥମିଯିବେ ନିର୍ଜନତାର ପାଦଶବ୍ଦରେ। ଚାରିପାଖର ନିଃଶବ୍ଦତା ତୁମ ଶବ୍ଦମୟତାକୁ ବାଟ ଛାଡ଼ିଦେବ ସନ୍ତର୍ପଣରେ।

ତୁମେ କିନ୍ତୁ ଚୁପ୍‌ଚାପ ଉଭା ହେବ ମୋ ସାମ୍ନାରେ।

ଋତୁ କି ବସନ୍ତ? ବେଳା କି ପ୍ରଭାତ? କିଛି ଜାଣିବା ଆଗରୁ ପ୍ରାଣସ୍ପନ୍ଦନମାନ ସ୍ତବ୍ଧ ରହିଯିବେ ମୋ ନିଷ୍ପଂଦ ଛାତି ଭିତରେ। ମୋ ଭାବମୂଢ଼ ବିହ୍ୱଳତା ମିଳାଇଯିବ ତୁମ ଆଖିର ମୁଗ୍ଧ ତାରକାରେ। ମିଳିବା ଓ ମିଳାଇବାର ଶିହରଣଟି ଅବାକ୍ ଅନନ୍ତତାରେ ପ୍ରସରିଯିବ ଆକାଶର ଆଲୁଅ ଓ ପୃଥିବୀର ଅଂଧାର ମଝିରେ।

ଆଲୁଅ ଓ ଅଂଧାର ଏକାବେଳକେ କଥା କହିଉଠିଲେ ମୁଁ କ'ଣ କରିବି ଆଖି କାନ ବନ୍ଦ କରିଦେବା ଛଡ଼ା?

ସେତେବେଳେ ତ ସବୁ ଓଲଟପାଲଟ ହୋଇଯିବ। ଆଖିକୁ ଆକାଶ ପାଇବ ନାହିଁ; ଲମ୍ବି ଯାଇଥିବ। ଛାତିକୁ ସମୁଦ୍ର ପାଇବ ନାହିଁ, ବ୍ୟାପି ଯାଇଥିବ।

ସେତେବେଳେ ସବୁ ଅଦ୍ଭୁତ ମନେହେବ। ଅପୂର୍ବ ସଂଗୀତର ସ୍ୱର ଶୁଭିଯିବ ଓ ଦୁର୍ଲଭ ସ୍ନେହ ସ୍ମୃତିମାନେ ଜାଗିଉଠିବେ।

ଛୁଟି ଆସିବେ ଚନ୍ଦ୍ର ତାରା: ଚାରିଆଡ଼ ହାଲୋଳମୟ। ହଜାର ରାତିର ଅନ୍ଧାରକୁ ଜାଳିଦେଇ ସୂର୍ଯୋଦୟର ଭୋରଟିଏ ଜଳିଉଠିବ। ପ୍ରଜାପ୍ରତିର ଡ଼େଣାରେ ରଂଗଧାରା ଅଜାଡ଼ିହୋଇଯିବ। ଚୋରାବସନ୍ତ ଅନହୂତି ଆସି ଛୁଇଁଦେବ। ଫୁଲର ପାଖୁଡ଼ାମାନ ମହୁ ହୋଇଯିବେ।

ସେତେବେଳେ ଶବ୍ଦମାନେ ଭାବମୟ ହୋଇଉଠିବେ, ଭାବମାନେ ଶବ୍ଦରୂପରେ ଉଭା ହୋଇଯିବେ।

ତ୍ରିକାଳକୁ ମୁହୂର୍ତ୍ତ ଉପରେ ସଂଭାରିନେଇ ବେଦବାଣୀ ବଂଶୀଧ୍ୱନି ହୋଇ ପ୍ରସରିଯିବ।

ପୃଥିବୀର ଛାତି ଉପରେ ଠିଆହୋଇ, ଆକାଶକୁ ଚାହିଁ ରାଧା ପ୍ରେମର ଏକ ଅସ୍ଫୁଟ ଉଚ୍ଚାରଣ ହୋଇ ମିଳାଇଯିବ।

×   ×   ×   ×

ଏବେତ, ପ୍ରତିଟି ପଦଧ୍ୱନିରେ ଭ୍ରମ। ଆଖିର ଝରକା ଖୋଲି ନିଷ୍କଳ ଆଶାପ୍ରତିମା ଥରିଉଠେ। ପାଷାଣରେ ପ୍ରକଂପନ ଜାଗେ। ଅସ୍ତିତ୍ୱଟା ବଂଧା ପଡ଼ିଯାଏ ଉତ୍କଣ୍ଠାର ନୀରବ ତଂତ୍ରୀରେ।

ଆଖିକୁ ମନାକରିବ କିଏ? ସବୁ ନିରୁଦ୍ଧ ହୋଇଯିବା ପରେ ବି ସେ ନିଜକୁ ବିସ୍ଫାରିତ କରିଥିବ ଜଳାକବାଟିରେ। ଆଖିର ପ୍ରତ୍ୟୟକୁ ଭାଂଗିପାରିବ କିଏ? ଶୂନ୍ୟ ଆକାଶ ଜାଣି ବି ତ ସେ ଖୋଜିହେଉଥିବ ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ରଟିଏ। ଖୋଜିହେଉଥିବ ସବୁ ଅଦେଖା ଅନୁଭବର ରୂପମୟ, ଦୃଶ୍ୟମୟ ମୁହୂର୍ତ୍ତଟିଏ।

ଏମିତି କ'ଣ ରାତି ଅଛି ଯାହା ସକାଳର ବାଟ ରୋକିଦେବ? ଏମିତି ଅଂଧାର ଅଛି, ସୂର୍ଯ୍ୟକୁ ଲୁଚାଇଦେବ ଆକାଶରୁ? ଏମିତି ଅସ୍ୱୀକାର ଅଛି ଅପେକ୍ଷାର ଆଖି ମୁଦିଦେବ?

ଆକାଶ କେବେ ଶୂନ୍ୟ, କେବେ ଶେଷ ହୋଇଯିବ, ଏକଥା ମାନିନେବା ପୃଥିବୀ ପକ୍ଷେ ଅସମ୍ଭବ। ଆକାଶ ଶେଷ ହେବାର ବହୁ ପୂର୍ବରୁ ପୃଥିବୀ ତା ଭିତରେ ନିଃଶେଷ ହୋଇଯାଇଥିବ। ପୃଥିବୀର ସ୍ୱପ୍ନମାନଙ୍କୁ ସାରିପାରିବ ନାହିଁ ବୋଲି ଆକାଶ ନିଜେ ସରିପାରିବ ନାହିଁ।

ସ୍ୱପ୍ନ ତ ମୋର ଦିଗ୍‌ବଳୟର ନୀଳରେ ସ୍ଥିର ହୋଇଯାଇଛି। ସେ ନୀଳରେ ମୋର ଆଶା ବିଶ୍ୱାସର ସବୁ ଭବିଷ୍ୟତ ଏକାଗ୍ର ହୋଇଯାଇଛି। ସବୁ ରାସ୍ତାର ମୁହଁ ଏବେ ମୋ'ରି ଝରକା ଆଗ ଦେଇ ସେଇ ଚକ୍ରବାଳ ଆଡ଼କୁ ଲଂବିଯାଇଛନ୍ତି। ଆକାଶ ଓ ପୃଥିବୀକୁ ସଂଯୋଗ କରି ମୁଁ ପ୍ରତୀକ୍ଷାର ମହାଜାଗତିକ ରୂପ ଧାରଣକରି ଦେଶକାଳକୁ ଅବିଭକ୍ତ କରିଦେଇଛି।

ପ୍ରତୀକ୍ଷା ଯେତେବେଳେ ରୂପ ପରିଗ୍ରହ କରେ, ସେ ହୁଏ ରାଧା! ସେ ପ୍ରତୀକ୍ଷା ଅବଶ୍ୟ ତୁମର ଆସିବାର ସର୍ତ୍ତ ନୁହେଁ। ମୁଁ ଜାଣେ, ପ୍ରେମ କେବେବି ପ୍ରତୀକ୍ଷା ବା ଆଉ କେଉଁ ସର୍ତ୍ତର ଅଧୀନ ନୁହେଁ।

ମାତ୍ର ପ୍ରତୀକ୍ଷା ତ ସବୁଦିନେ ପ୍ରେମର ସର୍ତ୍ତାଧୀନ।

ଏଣିକି ତ ଏମିତି ରାତିଦିନ ଚାହିଁବା ତୁମକୁ। ତୁମ ପାଦଶବ୍ଦ ପାଇଁ ଆଖି କାନ ସହ ଛାତିର ସ୍ପନ୍ଦନଟିକୁ ଏକ କରିଦେବା। ମୁହୂର୍ତ୍ତରୁ ମୁହୂର୍ତ୍ତକୁ ଅପେକ୍ଷାରେ ଡେଇଁ ଡେଇଁ ଯିବା। ସବୁ ବିପର୍ଯ୍ୟସ୍ତ ଭଂଗାରୁଜା। ମ୍ରିୟମାଣତାକୁ ଗୋଟି ଗୋଟି ଆଶାର ଟୁକୁରା କରି ସଜାଡ଼ି ପଢ଼ିବା।

ଆଉ କିଛି ନହେଲେ ବି, ଅପେକ୍ଷାର ମାନେ ବୁଝିନେବା।

ମୁଁ ଅପେକ୍ଷା କରିବି ଆଉ ନିରାଶ ହେବି। ତା'ପରେ ସେ ନିରାଶାର ବ୍ୟଥାଟିକୁ ପବନରେ ଲୁଚାଇଦେବି। ଆଖିର ଲୁହ କରି କାକରରେ ଛୁପାଇଦେବି। ଏମନ

ହସ କରି ଫୁଲ ମୁହଁକୁ ଚାହିଁରହିବି। ମୋର ଲୁହ ଆଉ ହସ ଏକାଠି ହୋଇଯିବେ, ଏକ ହୋଇଯିବେ।

ଏ କି ବିଡଂବନା ଯେ ଜୀବନର ସମୁଦାୟ ପ୍ରେମ ତାହାରି ପାଇଁ ଅଶ୍ରୁ ହୋଇ ଝରିଗଲା, ଯିଏ କେବେ ବି ଲୁହଝରାର ଖବର ପାଇପାରିବ ନାହିଁ! ଲୁହ ପୋଛିଦେବାକୁ ହାତ କେବେବି ବଢ଼ାଇଦେବ ନାହିଁ!

କିଛି ପାଇଲି ନାହିଁ, ଅଥଚ୍ ପ୍ରାପ୍ତିର ସବୁ ପ୍ରଜାପ୍ରତି ଯେମିତି ଗୋଟିକ ପରେ ଗୋଟିଏ ଆଖି ଆଗକୁ ଆସି ଡ଼େଣା ହଲେଇ ଯାଇଛନ୍ତି। ହାତ ପାଆନ୍ତାକୁ ଲାଗି ଆସିଛନ୍ତି। ଅଥଚ୍ ଛୁଇଁବାର ମୁହୂର୍ତ୍ତରେ ସବୁ ଅନ୍ତର୍ଧାନ ହୋଇଯାଇଛନ୍ତି।

କାଇଁକି ଏ ଆୟୋଜନ ଘଟିଥିଲା? ସାର୍ଥକତାର କେଉଁ ରୂପ ସଂଭାବନା ଲୋଡ଼ି ଧରାବତରଣ କରିଥିଲା? ସବୁ ଆୟୋଜନର ସମାରୋହକୁ ତବ ତବ ଆଖିରେ ଖାଲି ଦେଖିଗଲି। ହାତରେ କିଛି ଧରିପାରିଲି ନାହିଁ। ବୁକୁରେ କିଛି ସଂଚିପାରିଲି ନାହିଁ।

ଛାଇଭଳି ନିରବଧି ଅନ୍ତରରେ ତାକୁ ଧରିରଖିବାର ଏ କି ପ୍ରାଣାନ୍ତ ଚେଷ୍ଟା, ଯିଏ କେଉଁ ମୁହୂର୍ତ୍ତର ବି ନୁହେଁ!

ଅଥଚ୍ ଏତେ ହତାଶା, ଅପ୍ରାପ୍ତିର ଏତେ ହାହାକାର ସତ୍ତ୍ୱେ ସେ ହୃଦୟ ଛାଡ଼ି ଚାଲିଯାଏନା କାହିଁକି? କିଏ ତାକୁ ବାଂଧିରଖେ? ସତରେ କ'ଣ କିଛି ତାକୁ କେବେ ବାଂଧିପାରେ? ପବନ ଭଳି, ସ୍ୱପନ ଭଳି ତ ତା'ର ସେ ଆବିର୍ଭାବ ଆଉ ଅନ୍ତର୍ଧାନ।

ମମତାର ଡୋରିସବୁକୁ ସେ ଗୋଟି ଗୋଟି ଛିଡାଏ। ଅଭିଳାଷାର ପତ୍ରମାନଙ୍କୁ ଗୋଟି ଗୋଟି ଖସାଏ। ଆଉ କେଉଁ ଲୋଭନୀୟ ଆଶାଫୁଲଟି ହୋଇ ତଥାପି ସେ ଉଙ୍କିମାରୁଥାଏ?

ପ୍ରାପ୍ତିକୁ ଭରସା କରିଥିବାର ସେହି ଦିନଗୁଡ଼ିକ ପଛରେ ପଡ଼ିରହିଛି। ଭବିଷ୍ୟତକୁ ଆଉ କିଛି ଆଶା ବାକି ନାହିଁ। ତଥାପି କାହିଁକି ପ୍ରାପ୍ତିର ଏକ ବିରାଟ ଛଳନା ଭିତରେ ସେ ମତେ ନିଶାଗ୍ରସ୍ତ କରି ରଖିଛି?

'ନାଁ'ର ଗୋଟିଏ ବିରାଟ ପର୍ବତ ଉପରକୁ ଏଇ ଅବୋଧ 'ହଁ'ର ଟିକିଟିକି ଗୋଡ଼ିପଥର ମୁଁ ଏମିତି କେତେ ଫିଙ୍ଗି ଚାଲିଥିବି?

'ନାଁ'ର ବର୍ଷଣଜାଳ, ନାସ୍ତିବାଚକତାର ବିସ୍ତୃତ ଶରଶଯ୍ୟା ଉପରେ ସେ କେଉଁ ମୁମୂର୍ଷୁ, କ୍ଷୀଣ 'ହଁ', ଯାହା କେବେ ବି କୌଣସି 'ନାଁ'କୁ ସ୍ୱୀକାର କରିବନାହିଁ। ମାନିନେବନାହିଁ। ସବୁ ପ୍ରତିରୋଧ ଭିତରେ, ମୃତ୍ୟୁର ଚାରିକାନ୍ଥ ଭିତରେ ବି ସେ ନିଜକୁ ବଂଚିରହିଥିବାର ଦେଖିବ। ବରଫ ଶେଯରେ ଶୋଇରହି ମଧ୍ୟ ଦୂର ଆକାଶର କ୍ଷୀଣ ତାରକାଲୋକରେ ଉଷ୍ଣତାର ସଂଧାନନେବ।

ଏ କିଭଳି ଏକ ବିଚିତ୍ର 'ହଁ' ଯେ ସକଳ ଶୂନ୍ୟତା ଭିତରେ ଏକାକୀ ପହଁରି ଚାଲିଥିବ। ଗୋଟାଏ କ୍ଷୀଣାତିକ୍ଷୀଣ ପ୍ରତିରୋଧ ହୋଇ ସବୁ ବିଫଳତାର

ମରୁବାଲି ଭିତରୁ ମୁଣ୍ଡ ଟେକି ଉଠୁଥିବା ଦୂବଘାସଟିରେ ଦୁର୍ଜ୍ଜୟ ବଂଚିବାକୁ ସାବ୍ୟସ୍ତ କରୁଥିବ।

× × × ×

ମତେ ଏଇଠି ଏମିତି ଠିଆ କରେଇ ଦେଇ ଯାଇଚ ଯେ ଯାଇଚ। ତୁମେ ଦେଖିଯାଇଥିବା ଦୁଇଧାର ଆଖିଲୁହ ଏବେ ସମୁଦ୍ରକୁ ଡୁବାଇ ସାରିଲାଣି ମୋ ଛାତି ଭିତରେ। ଆକାଶମୟ ବିସ୍ତାରିତ ଏବେ ମୋ ଅପେକ୍ଷାର ଆଖି। କଥା ଦେଇଯାଇଥିଲ ଯେ ଆସିବ– କେମିତିକା ସେ ଆସିବା– ଯିବା ବାଟକୁ ବି ଯାହା ଭୁଲିସାରିବଣି। ବିସ୍ମରିଯିବଣି ସେ ଅପେକ୍ଷାର ଆଖି ଓ ଆତୁର ଲୁହଧାରକୁ।

ଅଥଚ ମୁଁ କି ନିର୍ବୋଧ ଯେ ଏ ବିସ୍ମରିବାକୁ ସତବୋଲି କଦାପି ମାନିନେଇ ପାରୁନାହିଁ। ହଜିଗଲେ ଏମିତି ଖୋଜିବାକୁ ହୁଏ? ଆଖିରେ କେବଳ ନୁହେଁ, ଛାତିରେ ବି, ସ୍ମୃତିରେ ବି...

ଏ ଆଖି ଯମୁନା ଦେଖିଛି। ଏ ଛାତି ମରୁଭୂମି ଦେଖିଛି। ପ୍ରେମର ଆଉ କେଉଁ ଭିନ୍ନରୂପ ଦେଖିବାକୁ ବାକି ରହିଛି?

ଶ୍ୟାମ! ବୃନ୍ଦାବନରେ ତୁମେ ସେଦିନ ମୋ ସହ କେବଳ ମଧୁରାସ ରଚନା କରିଥିଲ। ତୁମ ସ୍ମୃତି କିନ୍ତୁ ସର୍ବତ୍ର ମୋ ସହ ଅନେକ ରତ୍ନରାସର ମଧୁବିଳାସ ରଚିଚାଲିଛି। ବିରହର ଗୋଟାଏ ରସରେ ନବରସ ଏକରସ ହୋଇଯାଇଛନ୍ତି। ସ୍ମୃତି ଓ ପ୍ରତୀକ୍ଷାର ଦୁଇ ଆଖି ନେଇ ପ୍ରେମ ମୋ ଭିତରୁ ଅହରହ ତୁମକୁ ଦେଖିଛି। ତା'ର ସବୁ ନିଷ୍ଠୁର ବିରହପୀଡ଼ନକୁ ମୁଁ ତୁମର ମିଳନସ୍ପର୍ଶ ରୂପେ ଲାଭକରିଛି।

ବ୍ୟଥା ଓ ପୁଲକର ଦୁଇ ବାହୁରେ କୋଳାଗ୍ରତ କରି ପ୍ରେମ ମତେ ତା'ର ମହାଭାବମୟ ଆଲିଙ୍ଗନ ଭିତରକୁ ଟାଣିନେଇଛି।

ବିରହର ଗାନ ପାଇଁ ଆଉ ଭୟ ନାହିଁ। ଏକ ଉତ୍ତରହୀନ ସର୍ବଗ୍ରାସୀ ପ୍ରେମ ପାଖରେ ଯେ ମୋର ସର୍ବସ୍ୱ କୁଢ଼ାଇଦେଇଛି।

ଜୀବନର ସମୁଦାୟ ଲୁହକୁ ବର୍ଷାର ଆକାଶ ସଜାଇ ତଥାପି ତା'ର ସାମୁଦ୍ରିକ ତୃଷ୍ଣାକୁ ମିଟାଇ ପାରିବି କି ନା ଜାଣେନା।

କୂଳରେ ବସି ଗୋଟାଏ ଦି'ଟା ଲହରୀ ଗଣିବା ନୁହେଁ, ପୃଥିବୀ ପ୍ରଦକ୍ଷିଣ କରି ଅନନ୍ତ ସମୁଦ୍ରର ଅଗଣିତ ତରଂଗମାଳାକୁ ଗୋଟି ଗୋଟି କରି ଗଣିଚାଲିବା ମୋର ଭବିତବ୍ୟ।

ସମୁଦ୍ରକୁ ଥରେ ହୃଦୟ ଢାଳିଦେଲେ ଯେ ଆପଣାକୁ ଲୁଣି ଲୁହ ହୋଇ ତା'ଠାରେ ମିଳାଇଯିବାକୁ ହୁଏ, ସେଥିକୁ ଭୟ କରି ଆଉ ଲାଭ କ'ଣ?

ସମୁଦ୍ରର ପ୍ରେମ ପରି ତା'ର ବିରହ ମଧ୍ୟ ସେତିକି ସାମୁଦ୍ରିକ। ତା'ର ପ୍ରୀତିର ସ୍ୱରଟି ଯେତିକି ଧୀର ଗଂଭୀର, ତା'ର ଆବେଗର ଆକର୍ଷଣ ସେତିକି ଉତ୍ତାଳ, ଉଦ୍‌ବେଳ, ତା'ର ଉପେକ୍ଷାର ଆଘାତ ବି ସେତିକି ଦୁଃସହ ଦାରୁଣ।

ସମୁଦ୍ର ମତେ ଆତ୍ମସାତ୍ କରିବ।

ସାମୁଦ୍ରିକ ଝଡ଼ର ସେ ଭୟାବହତାକୁ ମୁଁ ଚାକ୍ଷୁଷ ଭେଟିସାରିଛି। ରାତିର ଅଂଧାରରେ ସେ ଝଡ଼ ଆହୁରି କଳା। ତା'ର ଗର୍ଜନ ଆହୁରି ଭୀଷଣ। ଲହରୀ ଉତ୍ପାତ ପ୍ରବଳତର। ସମୁଦ୍ର ତା'ର ସେ ଉତ୍ତାଳ ତରଙ୍ଗ ଶିଖରରୁ ପୂରାପୂରି ତଳକୁ କଚାଡି ଦେଉଥିବ। ମାତ୍ର ଯେତେ ଫିଙ୍ଗିଲେ ବି, ସମୁଦ୍ରର ଛାତି ଛଡ଼ା ମୋର ଆଉ ଆଶ୍ରୟ କେଉଁଠି ?

ତୁମେ ମୋର ସେ ସାମୁଦ୍ରିକ ଯନ୍ତ୍ରଣା, ସାମଗ୍ରିକ ଆଶ୍ୱାସନା ବି। ଯନ୍ତ୍ରଣା ବୋଲି ହିଁ ଆଶ୍ୱାସନା। ତୁମ ଛଡ଼ା ସେ ଯନ୍ତ୍ରଣାର ସ୍ୱରୂପ କିଛି ନାହିଁ। ତୁମ ଭିନ୍ନ ଯନ୍ତ୍ରଣାହୀନତାର ଅର୍ଥ ମଧ୍ୟ କିଛି ନାହିଁ।

ବିରହ ତୁମଠାରୁ ଭିନ୍ନ ନୁହେଁ। ତୁମେ ସେ ବିରହର ଛଦ୍ମରୂପ !

ମୁଁ କ'ଣ ଜାଣେନା ଯେ ସମୁଦ୍ରର ବିରହାବେଗ ଯେତେ ଉତ୍ତାଳ ତା'ର ପ୍ରେମ ସେତେ ଗଭୀର ହେବ। ଅଜସ୍ର ଚଳୋର୍ମିର ଅସୁମାରି କରାଂଗୁଳିରେ ଦୁଇକୂଳକୁ ବାରବାର ସ୍ପର୍ଶ କରି ମଧ୍ୟ ସେ ପରିତୃପ୍ତ ମିଳନ ସୁଖ କେବେ ପାଇପାରେ ନାହିଁ। ସମୁଦ୍ରର ସ୍ରୋତଧାରା ଚିର ବିରହର ଧାରା। ସେତିକି ବିରହ ତାପକୁ ହୃଦୟରେ ବାଡ଼ବାନଳ ରୂପେ ଧରି ସଂତପ୍ତ ହେବାର ଜ୍ୱାଳାକୁ ବୁଝିଥାଏ ବୋଲି ତ ନିଜ ବାରିଧାରାକୁ ବର୍ଷାବିନ୍ଦୁର ଆଶ୍ୱାସନା ସଜାଇ ବେଳାବାଲିକୁ ଶୀତଳ ଶାନ୍ତ କରିବାକୁ ସେ ବ୍ୟାକୁଳ ହୋଇପଡ଼େ।

ସେ ବିରହ-ସମୁଦ୍ରରେ ଥରେ ବୁଡ଼ିଗଲେ ଆଉ ଖରା ବର୍ଷା ଶୀତ ବସନ୍ତ କ'ଣ ?

× × × ×

ତୁମେ ମତେ ଗୋଟାଏ ବସନ୍ତର ପ୍ରତିଶ୍ରୁତି ଦେଇଯାଇଥିଲ ନା ? ତୁମେ ଆସିଲେ ହିଁ ଋତୁ ବସନ୍ତ ହୋଇଯିବ ବୋଲି ମୋ ବଗିଚାରେ ଚାହିଁବସିଛି।

ରାଧାର ଜୀବନରେ ବସଂତ ତ ଋତୁ ହୋଇ ଥରେ ମାତ୍ର ଆସିଛି। ତା'ପରେ ରାଧା ସବୁଦିନ ମେଘର ଋତୁକୁ ତା'ର ଆଖିର ଋତୁ, ତୁମ ଦେହର ଋତୁ ବୋଲି ଦେଖିଆସିଛି।

ବସନ୍ତର ସବୁ ସ୍ୱପ୍ନକୁ ଏବେ ଏଇ ଅୁଣ୍ଡା ଅଶୋକଗଛ ମୂଳେ କୁଢ଼ାଇଦେଲି। ଆଉ କଅଁଳ ନାଲିପତ୍ର, ହଳଦୀ ରଂଗର ଫୁଲ, ଝରା ମାଳତୀର ବାସ୍ନା ମତେ ବିହ୍ୱଳ କରିବାକୁ ମୋ ମାଧବୀ-ବଗିଚାକୁ ଆସିବେ ନାହିଁ।

କିନ୍ତୁ ସତରେ କ'ଣ ରାଧା ମନରୁ, ବ୍ରଜ ବନରୁ ବସନ୍ତର ପ୍ରତୀକ୍ଷା-ଅଧୀରତା ଅନ୍ତର୍ହିତ ହୋଇଯାଇପାରିବ ?

ତୁମେ ଯେ ମୋ ମନବନରେ ମୁଠାଏ ମହୁଆ ଫୁଲ ହୋଇ ଫୁଟି ରହିଚ। ମୁଁ ଜାଣିସାରିଲିଣି ଏ ଯମୁନାବାଲି ଏମିତି ପଡ଼ିରହିଥିବ। ଏଠି ଆଉ କାହାରି ରଂଗାପାଦ ପଡ଼ିବ ନାହିଁ। ଆଉ କାହାରି ପାଦରେ ରଂଗ ଢ଼ାଳିବାକୁ ମୋ ଅବିରବୋଳା ହାତ ଲଂବିଯିବ ନାହିଁ। ଏ ନଈ ପବନରେ, ନିଜ ଛାତିର ନିଶ୍ୱାସ ଛଡ଼ା ଆଉ କୋଉ ଦରଦୀର ଛାତି ପବନ ମିଶିବନାହିଁ। ତରଂଗର କୋହ ଛଡ଼ା ଆଉ କୋଉ ସ୍ୱର ଏଠି ଉଚ୍ଚାରିତ ହେବନାହିଁ। ନିଜକୁ ଦେଖିବା ଛଡ଼ା ଆଉ କେଉଁ ବିହ୍ୱଳ ମୁଗ୍ଧ ଆଖି ଏହାକୁ ନିରେଖିବ ନାହିଁ। ଏ ଜୀବନରେ ନିଜ ଛଡା ଆଉ କାହାରି ଛାଇ ବି ରହିବନାହିଁ। ଏ ଏକାକିତ୍ୱକୁ ସାରା ଜୀବନ ଏମିତି ବହିବାକୁ ହେବ।

ବୁଝିନେବାକୁ ହେବ ଯେ, ଏ ଜନ୍ମପାଇଁ ପଦ୍ମ ପଳାଶ ବନ ଜଳିଯାଇଛି। ମରୁ ଆକାଶରୁ ସବୁ ମେଘାଡଂବର ସରିଯାଇଛି। ତା' ପାଇଁ ଆଉ କଜଳ ସଜଳ ଆକାଶ ଆସିବ ନାହିଁ। ଫୁଲ କଦଂବର ସକାଳ ସାଜିବ ନାହିଁ।

ଗଛରୁ ପତ୍ରମାନେ ଝରିପଡ଼ିବା ପରି, ବୃନ୍ତରୁ ପାଖୁଡ଼ାମାନେ ଖସିପଡ଼ିବା ପରି, ନଈବାଲିରୁ ପାଣିଝର ଶୁଖିଯିବା ପରି, ଆକାଶରୁ ଚନ୍ଦ୍ର ସୂର୍ଯ୍ୟ ବୁଡ଼ିଯିବା ପରି ଏବଂ ଆଖିରୁ ଲୁହଧାର ନିଗିଡ଼ିପଡ଼ିବା ପରି ଆଶାମାନେ ଗୋଟି ଗୋଟି ମଉଳି ଗଲେଣି। ନିର୍ଲଜ୍ଜ ଏ ଗଛମାନେ ତଥାପି ଫୁଲ ଫୁଟାଇ ଚାଲିଛନ୍ତି। ବୃନ୍ଦାବନ ଯେ ବର୍ଷ ବର୍ଷ ଧରି କଦମ୍ବବନ ହୋଇ ଫୁଟିରହିଛି, ସେ କଥା ଯେ ଜାଣି ନ ଜାଣିଲା ପରି ଉପେକ୍ଷାରେ ରହିଯାଇପାରେ, ତା ପାଖେ ପ୍ରେମର କି ପରିଚୟ ଖୋଜାଯାଇପାରେ ?

ତୁମେ ନିଷ୍ଠୁର। ତୁମ ନିଷ୍ଠୁରତା ମରୁଭୂମି ସୃଷ୍ଟି କରିବାରେ ନୁହେଁ, ମରୀଚିକାର ଭ୍ରମ ରଚନା କରିବାରେ। ମରୁଯନ୍ତ୍ରଣା ମରୁଭୂମିରେ ନଥାଏ, ଥାଏ ମରୁତୃଷ୍ଣାରେ।

ତୁମ ନିଷ୍ଠୁରତାର ପ୍ରମାଣ ଖୋଜୁଛ ମୋ ହୃଦୟକୁ ଭାଂଗିଚୂରି ସହସ୍ରଖଣ୍ଡ କରି ? ତୁମେ କ'ଣ ଜାଣିନାହିଁ ଯେ ସେ ସହସ୍ର ଟୁକୁରାରେ ତୁମରି ମୁହଁର ହସ ଝଲସିଉଠିବ, ମୋ'ପାଇଁ ତୁମର ଏକ ରୂପ ସହସ୍ର ରୂପ ହୋଇଯିବ ?

ମାତ୍ର ମନେରଖ, ୟାପରେ ଆଉ କେବେ ପ୍ରେମ ନାମ ତୁଣ୍ଡରେ ଉଚ୍ଚାରିବ ନାହିଁ। ତୁମ ହାତରେ ପ୍ରଣୟର ମରଣ ଘଟିଛି।

ଯମୁନା ଉଛୁଳି ବ୍ରଜପୁର ବୁଡ଼ାଇଦେବ। ତୁମର କ'ଣ ଯାଏ ଆସେ ସେଥିରେ ? ତୁମ ପାଇଁ ବ୍ରଜବନର ଅଭାବ ଅଛି ନା ବ୍ରଜବାଳାର ଅଭାବ ?

ପ୍ରଣୟ ଆଶ୍ୱାସନାର ଚଉହଦୀ ଭିତରେ ତୁମେ କୁଆଡ଼େ ଏ ବିଶ୍ୱଭୁବନ ବଂଚାଇ ରଖିଥାଅ। ମାତ୍ର ମୋ ପ୍ରେମ ସଂପର୍କରେ ତୁମେ କ'ଣ ଏଭଳି ନିଶ୍ଚିତ ଯେ ଥରଟିଏ ଭେଟିବାର ପ୍ରୟୋଜନ ମଧ୍ୟ ମନରେ ଆସେନାହିଁ? ରାଧା ତୁମର କିଛି ନୁହେଁ ତଥାପି ତୁମକୁ ଅବଲଂବନ କରି ସେ ପ୍ରାଣ ଧରି ରହିଥିବ, ଏତିକି ବୁଝିନେଇଚ ବୋଲି ଏ ଉପେକ୍ଷା !

ଶ୍ୟାମ ! ଅତୀତକୁ ବୋଝ କରି ଫିଙ୍ଗିଦେଲୁ ? ଯମୁନାକୁ ମୁହଁ ବୁଲାଇ ସମୁଦ୍ର-ସ୍ନାନ କରିଗଲୁ ? ସବୁ ଫୁଲଫୁଟା ଅସାର୍ଥକ କରିଦେଲୁ। ଗଛମାନଙ୍କ ମୁହଁ ଶୁଖାଇଦେଲୁ। ପକ୍ଷୀମାନଙ୍କ ତଣ୍ଟି ବାନ୍ଧିଦେଲୁ। ରାତି ଆଉ ଦିନକୁ କରିଦେଲୁ ଦୁଇଟା ଲୁହ ଢଳଢଳ ଆଖି। ଆଶା ବିସ୍ଫାରିତ ଆଉ ହତାଶା କୁଂଚିତ ମୁହୂର୍ତମାନଙ୍କର ସାକ୍ଷୀ।

ତୋର ଯାଏ ଆସେ ନାହିଁ ଏ ଆକାଶ ସଫା ଥିଲେ କି ମେଘ ଘୋଟିଥିଲେ। ତୋ ଚନ୍ଦ୍ରକିରଣ ଅପେକ୍ଷାରେ ଥିବା ତା'ର ଅତନ୍ଦ୍ର ନିଶ୍ଚଳତାକୁ ତୁ ମୁହଁ ଫେରାଇନେଲୁ !

ଭେଟାଭେଟିର ସେ ପ୍ରଥମ ସକାଳରେ ଯେ ଓହ୍ଲାଇ ଆସିଥିଲା ପ୍ରଣୟ ପାଗଳ ଆକାଶର ହୃଦୟ ପ୍ରୀତିକଂପିତା ଧରିତ୍ରୀର କରପଲ୍ଲବକୁ, ଓହ୍ଲାଇ ଆସିଥିଲା ସ୍ୱଂୟ ପ୍ରେମ ମର୍ତ୍ତ୍ୟ ଭୁବନରେ ଆପଣାର ଭୂମି ଲୋଡ଼ି, ତାକୁ ଅସ୍ୱୀକାର କରିଦେଲୁ !

ରାଧା ଅହଂକାର କରିବ ନାହିଁ। ତା'ର ଚାରା କ'ଣ ଥିଲା ସେଦିନ ସେଇପରି ବିହ୍ୱଳ ନହୋଇ, ଉତ୍ସୁକ ନହୋଇ, ତଦ୍‌ଗତ ନହୋଇ ! ତା'ର ଦିନରାତିକୁ ତ ପ୍ରେମ ଚୋରାଇ ନେଇଥିଲା। ତା'ର ମନପ୍ରାଣକୁ ପ୍ରେମ ଅଧିକାର କରିନେଇଥିଲା। ତା'ର ଇହପରକୁ ପ୍ରେମ ଛାଇଯାଇଥିଲା।

ସେ ଏକ ଆଶ୍ଚର୍ଯ ସ୍ୱପ୍ନ ଦେଖୁଥିଲା। ଆକାଶ ଯେମିତି ପ୍ରେମର ନୀଳ ମୂର୍ତିଟିଏ ହୋଇ ତା ଆଖି ଆଗରେ ଠିଆହୋଇଯାଇଥିଲା। ପ୍ରେମ ଯେମିତି ସ୍ୱଂୟ ଆସି ତା ହୃଦୟକୁ ଭିକ୍ଷାକରୁଥିଲା।

ତା'ର ସେଇ ପାତିଲା ହାତପାପୁଲିରେ ମୁଁ ମୋର ମୁହଁ ଲୁଚାଇଦେଇଥିଲି।

ପ୍ରେମର ତ ଦୁଇଟି ମାତ୍ର ଆଖି। ଗୋଟିଏ ଆଖି ପ୍ରତିଶ୍ରୁତି ତ ଅନ୍ୟଟି ପ୍ରତ୍ୟୟ। ପ୍ରତିଶ୍ରୁତିଟି ଛୁଇଁଦେଲେ ପ୍ରଣୟଟି ମୁକୁଳିଉଠିବ। ଆକାଶ ଓ ପୃଥିବୀର ଛୁଆଁଛୁଇଁ ଘଟିଯିବ। ଆକାଶର ପ୍ରତିଶ୍ରୁତି ଉପରେ ଭରସା କରି ସିନା ପୃଥିବୀର ଏ ପ୍ରତ୍ୟୟାଂତ ଅପେକ୍ଷା।

ମାତ୍ର, ସବୁ ଅପେକ୍ଷା ସାର୍ଥକ ହୁଏ ନାହିଁ। ସବୁ ରାତି ସୂର୍ଯୋଦୟରେ ଶେଷ ହୁଏ ନାହିଁ। ମୁଁ ବୋଧହୁଏ ସେଇଭଳି ଏକ ରାତ୍ରି, ଯାହା ପାଇଁ ସଂଧ୍ୟାର ସମାରୋହଟି କେବଳ ଥାଏ, ଆସିବନି ମାତ୍ରକ ପାହାନ୍ତି . . .

ତୁମର ନ ଆସିବାଟାକୁ ନିଜ ପାଖେ କିଭଳି ସାବ୍ୟସ୍ତ କରିବି ? କାହିଁକି ବୋଲି ତୁମକୁ ପଚାରିପାରିବି ନାହିଁ। ଆକାଶକୁ ପଚାରିବି ? ପବନକୁ ପଚାରିବି ? ହୃଦୟରେ ତୁମ ଉତ୍ତର ସିଧା ସିଧା ନ ପହଞ୍ଚିଲେ ତୁମକୁ ମୋର ସେ କି ପ୍ରଶ୍ନ ପଚାରିବା ?

ପବନ ଯେତେବେଳେ ବହେ, ସେ କ'ଣ ଗଛପତ୍ରକୁ କହିକରି ଆସେ ? ପବନ ଆସିବାମାତ୍ରେ ତ ଗଛ ପତ୍ରଙ୍କ ଶିରା ପ୍ରଶିରାରେ ସଂବାଦର ଶିହରଣ ସଂଚାରିତ ହୋଇଯାଏ।

ସେମାନେ କୁହନ୍ତି, ମୁଁ କୁଆଡ଼େ ପାଗଳ ! ଦିନରାତି କଥା ହେଉଥାଏ – ଅଥଚ ସାମ୍ନାରେ ମୋର କେହି ନଥାନ୍ତି। କାହାକୁ କେମିତି ଜଣାଇପାରିବି ଯେ ଆଖି

ଆଗରେ ମୋର ସଦାବେଳେ ତୁମେ ଠିଆ ହୋଇଥାଅ। ତୁମ ପାଦ ମୋ ପାଦ ଅହରହ ଛନ୍ଦୋବଦ୍ଧ ରହିଥାଏ। ଆଖି ଆଖିରେ ନିବଦ୍ଧ ରହିଥାଏ।

ଆଉ, ତୁମ ସ୍ୱରକୁ ମୁଁ ସ୍ପଷ୍ଟ ଶୁଣିପାରୁଥାଏ। ମୋ ମୁହଁକୁ, ହସକୁ, ଅଭିମାନକୁ ତୁମ ଉତ୍ତରର ଶବ୍ଦାବଳୀ, ସ୍ୱରର ଧ୍ୱନିମୟତା, ଅତି ସ୍ପଷ୍ଟ ପ୍ରତ୍ୟକ୍ଷଭାବେ ଯେ ଶୁଭୁଥାଏ, ମୁଁ ତା'ର ପ୍ରତ୍ୟୁତ୍ତର ନ କରନ୍ତି କିପରି ?

ପାଗଳାମିର କଥା କବିତା ହେଉ ନହେଉ, ତୁମେ କିନ୍ତୁ ମୋ ଦିନ ରାତିର କବିତା।

ତୁମେ ଯଦି ମତେ ଭୁଲିଯିବାକୁ ଚାହୁଁଛ ମୋ ଚାରିପାଖରେ ଏତେ ମନେରଖିଥିବାର ଭିଡ କାହିଁକି ଲଗାଇଦେଇଛ ? ଆଖି କେଉଁଠିକି ଫେରାଇବି ? ଆକାଶରୁ ମାଟି ଯାଏ ଏଭଳି କେଉଁ ଦିଗ ଅଛି ତୁମ ରଂଗରେ ସାଜି ନାହିଁ ? ଆଖି ବୁଜିବା ମାତ୍ରକେ ଏମିତି କି ଦୃଶ୍ୟ ଅଛି, ଯାହା ତୁମ ସ୍ମୃତିରେ ମଜିନାହିଁ ?

ତୁମେ ସତରେ ମୋ'ଠାରୁ ଯଦି ମୁକ୍ତି ଚାହୁଁଥାଅ ତେବେ ଆଗ ଆପଣାଠାରୁ ମୁକ୍ତିନିଅ। ତୁମେ ଜାଣ ବା ନଜାଣ, ମୁଁ ଥିବା ଯାଏ ତୁମେ ଥିବ। ମୋତେ ବାଦ୍ ଦେଇ ତୁମେ ନିଜକୁ ମଧ୍ୟ କେଉଁଠି ଖୋଜି ପାଇବନାହିଁ।

ଶ୍ୟାମ, ମୋର ପ୍ରେମ ତୁମକୁ ଅମର ରଖିବ, ତୁମର କୀର୍ତ୍ତି ନୁହେଁ, ତୁମର ରାଜ୍ୟ ନୁହେଁ କି ସଂସାର ନୁହେଁ। ତୁମେ ଓ ତୁମକୁ ଅବଲଂବନ କରି ରହିଥିବା ସବୁକିଛି, ତୁମ ରାଜ୍ୟ-ସଂସାର, ଯଶକୀର୍ତ୍ତି କାଳବକ୍ଷରେ ହଜିଯିବେ। ବଂଚିରହିବ କେବଳ ରାଧାର ପ୍ରେମ – ଯମୁନାରେ ସ୍ନାନ କରିଥିବା ତା'ର ପ୍ରିୟତମ କୃଷ୍ଣ।

× × × ×

ସେଦିନ ବ୍ରଜାଂଗନାମାନେ ଉଦ୍ଧବ ନିକଟରେ ଦଇନି ପ୍ରକାଶୁଥିଲେ।

"କରପଲ୍ଲବର କନିଷ୍ଠ ମୁଦ୍ରିକା କଂକଣ ହୋଇଲା ହସ୍ତକୁ।" ମାତ୍ର ଗୋପୀନାଥଙ୍କୁ ବିଗତ ଗୋପ ପ୍ରେମର ସ୍ମୃତିମାନ କରିବାପାଇଁ ପ୍ରେମର ସେ ଶେଷ ଲଜ୍ଜାଟିକକ ନିବେଦନ କରିଦେଇ ମୁଁ ତାକୁ ରିକ୍ତ କରିଦେବିନାହିଁ।

ପ୍ରେମ କ'ଣ କେବେ ଭିକ୍ଷା ମାଗେ ? ଭିକ୍ଷାରେ ପୂର୍ଣ୍ଣ ହୁଏ ? ପ୍ରେମ ତ କେବଳ ଆପଣାକୁ ଢାଳିଦେଇ କୃତାର୍ଥ ହୁଏ। ତା'ର ଐଶ୍ୱର୍ଯ୍ୟ ସେ ନିଜେ। କେଉଁ ପ୍ରାପ୍ତିର ଲୋଭ ତା'ର ବୈଭବକୁ ଅପମାନ କରିବ ?

ଅଭିମାନର କଥା କହିବିନାହିଁ। ଏଇଥିପାଇଁ ଯେ ସେ ଅଭିମାନ ମୋ ପ୍ରେମର ପୂରାପୂରି ଅଧିକାର ଉପରୁ ଉଚ୍ଚାରିତ। ତାକୁ ତୁମେ ହୁଏତ ସାମ୍ନା କରିପାରିବ ନାହିଁ। ସେ ଦୁର୍ଜ୍ଜୟ ମାନର ପାହାଡ଼ ତୁମେ ଟଳାଇପାରିବନାହିଁ। ତା'ର ପ୍ରଚଣ୍ଡ ବହ୍ନିଧାସ ତୁମେ ସହିପାରିବ ନାହିଁ। ବରଂ ତାହା ମୋ'ରି ଭିତରେ ଜଳି ଜଳି ମତେ ନିଃଶେଷ କରିଦେଉ।

ସବୁ ପ୍ରେମକୁ ଯେ ନିଆଁରେ ପଶିବାକୁ ହୁଏ, ମରଣର କଳାଛାଇକୁ ଭେଟିବାକୁ ହୁଏ, ସେଥିପାଇଁ ଡର କ'ଣ ? ଜଳିଯିବାର ଯାହା ତା ତ ପ୍ରେମ ନୁହେଁ। ମୃତ୍ୟୁରେ ଯାହା ମୂହ୍ୟମାନ ତା ତ ଜୀବନ ନୁହେଁ। ଯାହା ଆତ୍ମଶକ୍ତିରେ ବଂଚି ନପାରେ, ଆତ୍ମରକ୍ଷା କରି ନପାରେ, ତାହା ପ୍ରେମ ନୁହେଁ। ପ୍ରେମର ସବୁଠାରୁ ବଡ଼ ପରୀକ୍ଷା ଯେ ଆପଣା ପାଖରେ। ମରଣର ପରୀକ୍ଷା ନଦେଲେ ପ୍ରେମ ଆପଣାର ବଂଚିବା ଶକ୍ତିକୁ କିଭଳି ଚିହ୍ନିବ ?

ସେତିକି ତ ଅହଂକାର ପ୍ରଣୟର। ଆପଣାର ସେଇ ଦମ୍ଭରେ ପ୍ରତିଷ୍ଠିତ ରହିଥାଏ ବୋଲି ତ ସେ ପ୍ରିୟତମ ପାଖରେ ଆପଣାକୁ ଭାଗ୍ୟକୁ ପୂରାପୂରି ସମର୍ପି ଦେବାର ଶକ୍ତି ପରୀକ୍ଷା ଦେଇପାରେ।

ମୋର ଗର୍ବ ଅହଂକାର ସବୁକୁ ତ ତୁମ ପାଦତଳେ କୁଢ଼ାଇଦେଇଛି। ମାତ୍ର ପ୍ରେମର ଏ ଅଭିମାନ ଉପରେ ମୋର କି ଅଧିକାର ଅଛି ?

ହୁଏତ ଏ ଅଭିମାନ ମୋ ପ୍ରେମସମୁଦ୍ରର ଉଚ୍ଛ୍ୱସିତ ହଳାହଳ ଧୂମ। ମତେ ଏହାକୁ ଗ୍ରାସ କରିବାକୁ ହେବ କିମ୍ବା ଏ ମତେ ଗ୍ରାସ କରିବ। ଆଗ୍ନେୟ ଉଚ୍ଛ୍ୱାସ, ବାତବାତ୍ୟା, ଭୂମିକଂପ ହୋଇ ହୁଏତ ସେ ମତେ ମିଳାଇଦେବ କିଂବା ନିଜେ ମିଳାଇଯିବ। ଏ ଅଭିମାନ ଯେ ମୋର ସତ୍ତାର ସାମଗ୍ରିକ ପ୍ରେମରୁ ଉଦ୍‌ଭୂତ। ତୁମେ ତୁମର ସମୁଦାୟ ଅସ୍ତିତ୍ୱ ସଂଜାତ ପ୍ରୀତିସ୍ପର୍ଶରେ କେବଳ ତାକୁ ଶାନ୍ତ କରିପାର। ତୁମର ମଥୁରା ଦ୍ୱାରକାର ବହୁଧା ବିଭକ୍ତ ସ୍ଥିତିକୁ ଅତିକ୍ରମ କରି ଯେଉଁଦିନ ଏକାଗ୍ର, ଏକାନ୍ତ, ଏକ ହୋଇ ମୋର ଏଇ ଏକୀଭୂତ ଅଭିମାନ ସମ୍ମୁଖରେ ଏକାକୀ ଉଭାହେବ, ସେ ତା'ର ସମସ୍ତ ପାର୍ବତ୍ୟ ଅହଂକାରକୁ ମାଟିରେ ମିଶାଇ ଗୋଟାଏ ଉଦ୍‌କୂଳା ତଟିନୀର ଆରଣ୍ୟ ଉଚ୍ଛ୍ୱାସରେ ତୁମ ପଦତଳେ ବହି ଚାଲିଯିବ...। କିମ୍ବା ସେଦିନ ସବୁ ରୁଦ୍ଧ ଆବେଗ ଗୋଟାଏ ପ୍ରବଳ ଉଚ୍ଛ୍ୱାସର ଅଦମିତ ଢ଼େଉ ହୋଇ ତୁମର କଠିନ ଶିଳାଛାତିରେ ପ୍ରଚଣ୍ଡ ଭାବେ କଚାଡ଼ିହୋଇପଡ଼ି ଭାଂଗିଚୂରି ସବୁଦିନ ପାଇଁ ମିଳାଇଯିବ।

ଏ ଜନ୍ମଟା ଯେମିତି ଏକ ଦୁର୍ଜୟ ଅଭିମାନର। ପ୍ରଚଣ୍ଡ ଅଭିମାନର ପ୍ରଜ୍ୱଳିତ ଦହନ। ଅଥଚ ସେ ଧାସ ପ୍ରକାଶର କ୍ଷୀଣତମ ଅଧିକାରଟି ପର୍ଯ୍ୟନ୍ତ ନାହିଁ। ଏ ଅଭିମାନ, ସଚରାଚର ଯାହା ପ୍ରଣୟକୁ ମୁଖର କରେ, ଯେମିତି ମୋର ମୂକ ହେବାର ସାଧନାରୂପ।

ମୋର ଅଭିମାନ କ'ଣ ତୁମ ନୀରବତାଠାରୁ ଅଧିକ ନିଷ୍ଠୁର, ଭୟଂକର ? ମୋର ଦୀର୍ଘଶ୍ୱାସ, ଅଭିମାନର କୋହ ତ ସାମାନ୍ୟ କେତୋଟି ଧ୍ୱନି ହୋଇ ମିଳାଇଯାଏ। ଉଚ୍ଚାରଣ ମାତ୍ରକେ ମିଳାଇଯାଏ। ମାତ୍ର ତୁମର ନୀରବତା ଯେ ଦୁଃସହ ପୀଡ଼ାର ବୋଝ ହୋଇ ମୋ ଉପରେ ଅହୋରାତ୍ର ଅଜାଡ଼ି ହୋଇ ପଡ଼ିଯାଏ।

ତୁମକୁ ନିର୍ମମ ଭାବିବାରେ ମୁଁ ନିରସ୍ତ ହେବିନାହିଁ। ତୁମ ନିର୍ମମତାକୁ ଭୁଲିବିନାହିଁ। ସେ ନିର୍ମମତା ବାରବାର ମତେ ଯେଉଁ ଆଘାତ ଦେଇଛି ତାକୁ ପୁନରୁଚ୍ଚାରଣ

କରିବି। ତୁମ ନିଷ୍ଠୁରତାକୁ ସ୍ମରଣ କରିବି, ତାହା ମତେ ସୁଖ ମନେହେଉଛି ବୋଲି ନୁହେଁ, କେତେ ଦୁଃଖ ଦେଇପାରେ ଜାଣିବା ପାଇଁ ଏବଂ ହୃଦୟ କେତେ ଦୁଃଖ ଧାରଣ କରିପାରେ ତା କଳନା କରିବା ପାଇଁ।

ଭଲପାଇବାର ଭରପୂର ଅହଂକାରରେ ଯେଉଁ ହୃଦୟ ଦିନେ ଉଲ୍ଲାସରେ ସ୍ଫୀର୍ଣ ହୋଇଯାଇଥିଲା, ଦୁଃଖକୁ ଯଦି ଧାରଣ କରିନପାରେ, ତୁମ ଦାନର ଭାରକୁ ସଂଭାର ରୂପେ ଗ୍ରହଣ କରିନପାରେ, ସେ ପ୍ରେମର ସକଳ ଅଭିମାନ ଏବଂ ଆତ୍ମପ୍ରସାଦ ବୃଥା, ହୃଦୟ ଏତକ ଜାଣିରଖୁ।

ଶ୍ୟାମ, ଗୋପ-ଲୀଳାର ସେଇ କ୍ଷଣ ବିରହର ଲଗ୍ନମାନଙ୍କରେ ମୁଁ ପରମୁହୂର୍ତ୍ତମାନଙ୍କର ମିଳନ ସଂଭାବନାରେ ହିଁ ବଞ୍ଚିରହିଥିଲି। ବିରହକୁ ପ୍ରାଣପବନ ସଂଚାଳନର ମଧ୍ୟକାଳ କରି ଢ଼ୋକି ନେଉଥିଲି। ସେତେବେଳେ ସେ ମୁହୂର୍ତ୍ତମାନ ତରଂଗ-ଚଂଚଳ ଥିଲେ। ଆସିବା ଯିବାର ଉଦ୍‌ବେଳନରେ ନିମିଷମାନ କେତେ ଭାବଶବଳିତ, ସ୍ୱରମାଧୁର୍ଯ୍ୟରେ ପ୍ରମୂର୍ଚ୍ଛିତ ଥିଲେ। ଏବେ କିନ୍ତୁ ଚିରବିରହର ଅନନ୍ତକାଳ ଧରି ମୋ ଜୀବନବୀଣାରେ ଏକ ବିଳଂବିତ ଲୟରେ ଗୋଟିଏ ସ୍ୱର ବାଜିଚାଲିଛି। ରାଗ-ବିପ୍ରଲଂଭ। ପ୍ରେମ ଏକରୂପ କି ବହୁରୂପ ମୁଁ ଜାଣେନା।

ମୁଁ କେବଳ ତା'ର ବିରହ-ବିଗ୍ରହକୁ ହିଁ ଭେଟିଛି। ଶୃଙ୍ଗାରର ମାଧୁରିମା ସବୁକୁ ବିରହାନୁଭବ ରୂପେ ପାଇଛି। ସେ ପ୍ରେମ ହୁଏତ ସୁଦୂର ନୁହେଁ, ବିଚ୍ଛିନ୍ନ ନୁହେଁ; ଅନ୍ତରଂଗ, ଅତି ନିକଟ ବୋଲି ଏତେ ତୀବ୍ର, ଜ୍ୱାଳାକର ହୋଇପଡ଼ିଛି। ଦିନ ରାତି ସତେ ଯେପରି ପ୍ରାଣପ୍ରିୟର ମଧୁରାଲିଙ୍ଗନ ଭିତରେ ଜଡିରହି ମୁଁ ଅହରହ ତା'ର ବିଚ୍ଛେଦ-କାତରତାରେ ପୀଡ଼ିତ ହୋଇଛି। ପ୍ରିୟ ଅନ୍ତରରେ ନିରବଧି ବିରାଜିତ ଜାଣି ମଧ ଦୁଃସହ ନିଃସଙ୍ଗତାରେ ଛଟପଟ ହୋଇଛି।

ଅଭିମାନର କଥା ତେଣୁ ତୁମକୁ କହିବିନାହିଁ। ଜାଣେ, ତୁମକୁ ଭେଟିବାର ଦୁର୍ଲଭ କ୍ଷଣଟି ଯଦି ଜୀବନାଂତରରେ, ଯୁଗାଂତରରେ ବି ଆସି ଉପସ୍ଥିତ ହୁଏ, ସେ ବେଳରେ ତୁମକୁ ମୋର ଏ ଅଶ୍ରୁ ସନ୍ତାପ ଅପେକ୍ଷା ଓ ବେଦନାର କଥା କିଛି ଶୁଣାଇପାରିବି ନାହିଁ। ତୁମକୁ ଦେଖିବା ମୁହୂର୍ତ୍ତରେ ହିଁ ମୁଁ ମୋର ମାନ ଅଭିମାନ ସବୁ ବିସ୍ମରଣ ହୋଇଯିବି। ଦୁଃଖର ସ୍ମରଣ ତ ଦୂରର କଥା, ଦୁଃଖ ଶବ୍ଦକୁ ମଧ ବିସ୍ମୃତ ହୋଇଯିବି।

ଅଭିମାନ ଯେ କେବଳ ଅଧିକାର ନୁହେଁ, ବର୍ଜନ ନୁହେଁ– ଏ ଉପଲବ୍‌ଧି ଯେମିତି ମତେ, ମୋର ଏ ଜନ୍ମକୁ ଅପେକ୍ଷା କରି ରହିଥିଲା। ଯେତେ କଷ୍ଟ ହେଲେ ବି, ଅଭିମାନରେ ଛାତି ଫାଟିଗଲେ ବି ତୁମକୁ ମୁଁ ଅସ୍ୱୀକାର କରିପାରିବି ନାହିଁ। ମୋ ଜୀବନରୁ ବାଦ୍ ଦେଇ ପାରିବି ନାହିଁ। ତୁମ ସଂପର୍କରେ କୌଣସି ନାହିଁକୁ ହୃଦୟରେ ସ୍ଥାନ ଦେଇପାରିବି ନାହିଁ। କେଉଁ ଏକ ଦୁର୍ବାର ଶକ୍ତି ମତେ ଚିରଦିନ ତୁମ ଆସିବା ପଥରେ ଏମିତି ବସାଇଦେଇଥିବ। ମୋର ଦୁର୍ବଳତା ଓ

ସାମର୍ଥ୍ୟ, ମୋର ପାଇବା ଓ ନପାଇବା, ମୋର ଅଧିକାର, ଦରିଦ୍ରତା ଓ ଆଶାର ଐଶ୍ୱର୍ଯକୁ ଯେପରି ଏକାଥରକେ ଉନ୍ମୁକ୍ତ କରିଦେବାପାଇଁ ଏ ନିଷ୍ଫଳ ପ୍ରେମର ଆବିର୍ଭାବ ଘଟିଥିଲା ।

ପ୍ରେମମାନେ ଯେ ମରଣ – ସେଟା ଠିକ୍ ଏଇପରି ବୋଲି ବୁଝିନଥିଲି । ଅଥଚ୍ ଜୀଇଁବାର ସବୁ ବାହାନା ତ ସେଇ ପ୍ରେମର ପ୍ରତିଶ୍ରୁତିରୁ ଉଚ୍ଚାରିତ ହୋଇଥାଏ ନା !

ଯେ ଏଭଳି ଭଲପାଇବା, ପୃଥିବୀକୁ ପଠାଇଦେଲା ପୃଥିବୀର ଭାଷା ନଶିଖାଇ ! ଆକାଶତଳେ ଠିଆକରିଦେଲା ଅନାବୃତ ଦେହ ମାତ୍ର ନେଇ !

ହେ ମୋର ବ୍ୟାକୁଳତମ ଇଚ୍ଛା – ଏ ବ୍ୟାକୁଳତାର ସଂବାଦ କିନ୍ତୁ କେବେ ବି ତୁମ ପାଖେ ପହଞ୍ଚିବ ନାହିଁ ।

ଶ୍ୟାମ, ତୁମ ପ୍ରେମକୁ ମୁଁ କ'ଣ ଚିହ୍ନେନାହିଁ ? ସେ'ତ କେବଳ ଅନୁରାଗିଣୀର ରଂଗା ପାଦଧୂଳି ଲଲାଟରେ ବୋଲି ଯମୁନା ତଟରେ ଲୋଟିଯାଏ ନାହିଁ, ପ୍ରିୟତମାକୁ ଅପବାଦର ଛିଦ୍ରମାଠିଆ ହାତରେ ପ୍ରଣୟାନୁରାଗର ଜଳପରୀକ୍ଷା ଦେବାକୁ ଗୋପଦାଣ୍ଡରେ କଳଂକିନୀ ସଜାଇ ବୁଲାଇପାରେ ମଧ୍ୟ ।

କେବଳ ଦୁନିଆଁଦାଣ୍ଡର ଅପବାଦ ନୁହେଁ, କୃଷ୍ଣର ଉପେକ୍ଷା ଅପମାନ ବି ନୁହେଁ, ଆପଣାର ନିରୁଦ୍ଧ ଅଭିମାନର ଜ୍ୱାଳାମୁଖୀ ସଂତାପକୁ ବୁକୁରେ ଲୁଚାଇ ତଥାପି ଯିଏ ଅପେକ୍ଷାରେ ବଂଚିରହେ, ସେ ନିର୍ଲଜ୍ଜ ରାଧାପ୍ରେମକୁ ଆଉ କ'ଣ ପ୍ରଶ୍ନ କରାଯାଇପାରେ ? ସେ କ'ଣ ଦୁନିଆଁର ଅନୁମତିକୁ ଅପେକ୍ଷା କରିଥିଲା ନାଁ ସମାଜର ଅପନିନ୍ଦାକୁ ଭ୍ରୂକ୍ଷେପ କରିଥିଲା ? ଶ୍ୟାମର ଅନୁଗ୍ରହକୁ ସିଏ ବା କାହିଁକି ଚାହିଁବସନ୍ତା ?

ରାଧାର ପ୍ରେମ କେବଳ ରାଧା ହୃଦୟର ସଂଭାର, କାହାପାଇଁ ଦୁର୍ବାର ହୋଇ ଅଜାଡ଼ି ପଡ଼ିବାର ପ୍ରଲୋଭନ-ବ୍ୟାକୁଳ ନୁହେଁ । ବରଂ ପ୍ରୟୋଜନ ଯାହାର ସାମୟିକ, ସେ ତ କ୍ଷଣପ୍ରୀତିରେ ହିଁ ସଂତୁଷ୍ଟ ରହିବ । ଯାହାପାଇଁ ଗୋପ ବୃନ୍ଦାବନ ମଥୁରା ଦ୍ୱାରକା ଏକେ ଏକେ ଭାବସଂପର୍କର ନବ ନବ ଆକର୍ଷଣରେ ଅପେକ୍ଷମାଣ, ରାଧାପ୍ରେମକୁ ସେ'ବା କାହିଁକି ସ୍ମରଣରେ ଆଣିବ ?

ମୁଁ ଭୁଲିଯାଇନାହିଁ ଏ ପୃଥିବୀ ଅଭିମାନର ଯୋଗ୍ୟ ନୁହେଁ। କାରଣ ଏ ପ୍ରେମର ବି ଯୋଗ୍ୟ ନୁହେଁ। ତଥାପି ବିନା ଅଭିମାନରେ ତାକୁ ଭଲପାଇବାକୁ ହୁଏ । ପୃଥିବୀର ମୂଢ଼ପଣ ଅଭିମାନକୁ ବୁଝିପାରିବ ନାହିଁ । ତଥାପି ତା'ର ବୁଝାମଣାର ଦିନଟି ପର୍ଯ୍ୟନ୍ତ ପ୍ରେମର ଧୈର୍ଯ ଅପେକ୍ଷା କରି ରହିବ ।

ଆଉ ରାଧାର ସେ ଅନନ୍ତ ଧୈର୍ଯ ନିକଟରେ ଶ୍ୟାମକୁ କେବେ ଅପରାଧୀ ସାଜି ଠିଆ ହେବାକୁ ହେବନାହିଁ । ଶ୍ୟାମ ଏମିତି କି ଅପରାଧ କରିପାରେ, କେଡ଼େ ବିରାଟ ସେ ଅପରାଧ ହୋଇପାରେ, ଯାହା ରାଧା ହୃଦୟର ପ୍ରେମଠାରୁ ବେଶି ଶକ୍ତିଶାଳୀ ?

ମୋ ପ୍ରେମର ପ୍ରସନ୍ନ ମଧୁର ସହଣିକ ଚାହାଣି ଆଗରେ ତୁମର ପାରିଲାଂ ନିପାରିଲା ସବୁ ଅର୍ଥହୀନ । ମୋ ପ୍ରେମ ଯେ ମତେ ଗୋଟାଯାକ ଅଧିକାର କରି

ରହିଛି। ତୁମ ପାଇଁ ସେଠି ରାଗରୋଷର ପ୍ରଶ୍ନ କାହିଁ? ହୃଦୟର ଅନୁରାଗକୁ ପୋଛିନେବା ଭଳି ବିରାଗର ଆଖି କ'ଣ ମୋର ଅଛି ?

ଶ୍ୟାମ, ତୁମେ ତୁମର ପ୍ରେମକୁ ଅସ୍ୱୀକାର କରିପାର। ସ୍ମୃତିକି ବିସ୍ମୃତ ହୋଇପାର। ମାତ୍ର ବିରହର ସମୁଦ୍ରରେ ବୁଡି ବୁଡି, ଲବଣାକ୍ତ ଲୁହରେ ଶିଝି ଶିଝି ଯେଉଁ ଉଜ୍ଜ୍ୱଳ ସୁନ୍ଦର ଅନୁଭବରତ୍ନମାନଙ୍କୁ ମୋର ହୃଦୟ ସଂଗ୍ରହ କରିଛି – ତାହା ମୋର ତୁମକୁ ଉପହାର।

ସେମାନେ ତୁମ ପ୍ରୀତିର ଅନୁଗ୍ରହ ନୁହନ୍ତି, ମୋ ଅନୁରାଗର ଉପାର୍ଜନ।

ମୋ ପ୍ରେମ ତ ପୃଥିବୀର ସବୁଠୁ ପୁରୁଣା ଆଶାଠାରୁ ବି ପୁରାତନ। ମୋ ମନର ଆଶା ମୋ ହୃଦୟର ପ୍ରେମ ପରେ ହିଁ ଜାଗିଛି। ପ୍ରେମର ଶଯ୍ୟାରେ ଆଶ୍ରୟ ଘେନିଛି। ତା'ର ବିଲୟ ପରେ ମଧ୍ୟ ପ୍ରେମ ବଚିଂରହିଥିବ।

ସ୍ରୋତଧାର ଶୁଖିଗଲେ ତ ନଦୀଶଯ୍ୟା ହଜିଯାଏ ନାହିଁ।

ପୃଥିବୀରେ ଆଉ ସବୁ କିଛି ପରି ଆଶାର ବି ଉଦୟ ବିଲୟ ଅଛି। ହେଲେ ରାଧାର ପ୍ରେମ ଆଶାକୁ ଅତିକ୍ରମ କରି ବି ବଂଚିରହିବ। ଶ୍ୟାମ, ତୁମେ କ'ଣ ଭାବିଲ ତୁମ ଫେରିଆସିବାର ସଂଭାବନା, ତୁମ ସହ ଆଉ ଥରେ ଭେଟ ହେବାର ଶେଷ ଆଶାଟିକକ ହଜିଗଲେ ମୋ ପ୍ରେମର ଜୀବନ ସରିଯିବ? ମୋର ପ୍ରେମ ଏଇ ଗୋପ ବୃନ୍ଦାବନ, ଏଇ ଆଖି ଆଗର ଜଗତ, ଏଇ ଏତିକି ଆକାଶ ଭିତରେ ବଂଧା ରହିନି। ସେ ମୋର ତ୍ରିକାଳର ତ୍ରିଜଗତ ଛାଇ ହୋଇ ମହାକାଶକୁ ମହାକାଳ ଅବଧି ତୋ ରୂପରେ ପାଇସାରିଛି।

× × × ×

ଆଜି ସବୁକଥା ମନେହୁଏ ତୁମକଥା। ସବୁ ସ୍ୱର ଶୁଣାଯାଏ ତୁମ ସ୍ୱର ପରି। ସମଗ୍ର ଆକାଶ ତୁମ ଆଖିର ଚାହାଣି। ଏ ପାଖରୁ ସେପାଖ ପୃଥିବୀ – ତୁମ ପଦଧ୍ୱନି।

ସମୟଗୁଡ଼ା ଏବେ ତୁମ ନାଁ ପାଲଟିଯାଇଛନ୍ତି। ଆଉ ଦୁଃଖ ନୁହେଁ ବା ସୁଖ ନୁହେଁ, ସ୍ମୃତି ନୁହେଁ ବା କ୍ରନ୍ଦନ ନୁହେଁ– ଖଣ୍ଡ ସମୟମାନ, ମୁହୂର୍ତ୍ତର ଭଗ୍ନାଂଶମାନ ଏକ ଅଖଣ୍ଡ ତୁମେ ହୋଇ ମୋ ଜନ୍ମର ପୂର୍ବାପର ବିସ୍ତାରିତ ହୋଇଯାଇଛନ୍ତି।

ସ୍ମୃତିର ବାହାନାର ପ୍ରୟୋଜନ ମଧ୍ୟ ଆଉ ନାହିଁ। ସ୍ମୃତି ଏବେ ସମୟ ପାଲଟି ମୋ ମୁହଁକୁ ନିର୍ନିମେଷ ଚାହିଁରହିଛି।

ଫୁଲଗଛ ପାଖେ ନଇଁପଡ଼ି ପାଖୁଡ଼ା ଗୋଟାଇ ନେବାବେଳେ, ଚଢ଼େଇ ମୁହଁରେ ଆଧାର ଦେବାବେଳେ, ଉଷାକିରଣରେ ଉଲ୍ଲସିତ ହୋଇଉଠିବା ବେଳେ, ମଧୁଜ୍ୟୋସ୍ନାରେ ତୁମକୁ ଖୋଜିବା ବେଳେ ଓ ରାତିର ଅଂଧାରରେ ନିଜକୁ ଖୋଜିହେବା ବେଳେ ସେ ସ୍ମୃତି ବଡ଼ ନିବିଡ଼, ଜାଗ୍ରତ ଓ ପ୍ରତ୍ୟକ୍ଷଭାବରେ ତୁମକୁ ମୋ ପ୍ରାଣସ୍ପନ୍ଦନ ସହ ଜଡ଼ାଇ ରଖିଛି। ପ୍ରାତ୍ୟହିକତା ଭିତରେ ଏକ ମୁଗ୍ଧ ସମାଚ୍ଛନ୍ନତା ମତେ ଅହରହ ଘେରିରହିଛି।

କେତେବେଳେ କାଦୁଅରେ ପଶିଛି, କେତେବେଳେ ଫୁଲବିଛା ରାସ୍ତାରେ ଚାଲିଛି, କିଛି ଜାଣିପାରିନାହିଁ। ଆଖି ଦୁଇଟା କେବଳ ଏକ ଅବୋଧ ଉତ୍ସୁକତାରେ ସାମ୍ନାର ରାସ୍ତାକୁ ମତେ ଟାଣିନେଇ ବାକୀ ସବୁ ଭୁଲାଇଦେଇଛନ୍ତି। ମୁଁ ପୃଥିବୀର କଣ୍ଟା କାଦୁଅ ଦୁଃଖ ଯନ୍ତ୍ରଣା ଭିତରେ ପଶି ମଧ୍ୟ ଯେମିତି ପଶିପାରିନାହିଁ। ମିଶିବା ଓ ବାହାରିବାରେ ତୁମକୁ ସମାନଭାବେ ଖୋଜିଛି। ତୁମ ଅନୁଚିନ୍ତା ସହ ସମାନଭାବେ ମଜ୍ଜିରହିଛି।

କୁଆଡ଼େ ବି ଯାଉନାହିଁ। ଯମୁନା କି ବୃନ୍ଦାବନ କେଉଁଠି ବି ତୁମକୁ ଖୋଜୁନାହିଁ। ତୁମେ ସେଠାରେ ନାହିଁ ବୋଲି ନୁହେଁ, ମିଳିବ ନାହିଁ ବୋଲି ନୁହେଁ, ତୁମକୁ ସେଠାରେ ଏଠାରେ କିଂବା ଆଉ କେଉଁଠାରେ ଖୋଜିବା ମୋର ଆଉ ଲୋଡ଼ା ହେଉନାହିଁ। ତୁମେ ତ ମୋ'ଠାରେ ସମାସୀନ ହୋଇଯାଇଛ। ମୋ ଭିତରେ ନିବିଷ୍ଟ ରହି ତୁମକୁ ମୁଁ ବଡ଼ ଏକାଗ୍ର ଭାବରେ ଦେଖିଚାଲିଛି। ସେ ମୋହନ ମାଧୁରୀକୁ ଛାଡ଼ି ନିଜ ଭିତରୁ ବାହାରକୁ ଆସିବାର ପ୍ରୟୋଜନ ଆଉ ମଣୁନାହିଁ।

ତୁମେ ମୋର ସେ ଗୋପନତମ ପ୍ରେମ: ଏଭଳି ଗୋପନତମ — ଉଚ୍ଚାରଣ କରିପାରିବି ନାହିଁ। ଏଭଳି ସୁନ୍ଦରତମ — ଆଙ୍କିପାରିବି ନାହିଁ। ଏଭଳି ମଧୁରତମ — ବାହାରକୁ କାଢ଼ିପାରିବି ନାହିଁ।

ହୃଦୟରୁ ବାହାରି ତୁମେ ମୋ ଆଖି ଆଗରେ ଠିଆ ହୋଇଗଲେ ଆଖି ହୁଏତ ତୃପ୍ତ ହେବ। ହୃଦୟ କିଂତୁ ବିଚ୍ଛିନ୍ନ ହେବାର ଦୁଃଖରେ ଭାଙ୍ଗିପଡ଼ିବ।

ନିଃସଂବଳ ସେ ହୃଦୟର ତ ମରୁଭୂମିର ଫୁଲଫୁଟା ସକାଳଟିଏ ପରି ସ୍ମୃତିମାତ୍ର ସଂବଳ। ପ୍ରେମଠାରୁ ତା'ର ସ୍ମୃତି ଅଧିକ ନା ? ପ୍ରେମରେ ତ ବିଚ୍ଛେଦର ଭୟ ଅଛି। ଦୁଃଖ ଅଛି। ମାତ୍ର ସ୍ମୃତି କେବଳ ସାନ୍ନିଧ୍ୟର ବିଭ୍ରମ ବିଳାସ।

ସ୍ମୃତି ହିଁ ତ ପ୍ରଣୟର ଅଂଗୀକାର।

ମୋ ହୃଦୟ କ୍ଷୁଦ୍ର, ସାମାନ୍ୟ ହେଲେ ବି ତା'ର ସ୍ମୃତି କିଂତୁ ନିଜ ଶକ୍ତିରେ ଅସାମାନ୍ୟ। ସେ ସ୍ମୃତିରେ ତୁମର ଧ୍ରୁବ ଉପସ୍ଥିତିକୁ ତୁମେ ମଧ୍ୟ ଅନ୍ୟଥା କରିପାରିବ ନାହିଁ।

ଯେତେଦିନ ଯାଏ ସେ ସ୍ମୃତିରେ ଅପେକ୍ଷା ମୋର ଜାଗ୍ରତ ଥିବ, ସେତେଦିନ ତୁମ ହୃଦୟର ପ୍ରେମ ଅତଂନ୍ଦ୍ର ରହିଥିବ। ଦିନର ପୃଥିବୀ, ରାତିର ଆକାଶ, ସମୟର ଅହର୍ନିଶ ଆଖି ଆମର ସେ ପ୍ରେମକୁ ନିରେଖି ଚାଲିଥିବ।

ଶ୍ୟାମ, ଯୌବନ ମୋର ଅତୀତ ହୋଇନାହିଁ। ଯେ ଯାବତ୍ ତୁମ ପାଇଁ ଏ ଆଖିର ପ୍ରତୀକ୍ଷା ଥିବ, ହୃଦୟରେ ତୁମ ପ୍ରୀତି ପ୍ରତି ଭରସା ଥିବ, ସେ ପର୍ଯ୍ୟଂତ ରାଧା ନବୀନା କିଶୋରୀ ସାଜି ରହିଥିବ, ଜରାକବଳିତ ଆଖି ଜ୍ୟୋତିଃହୀନ ହୋଇଗଲେ ଆକାଶର ନୀଳିମାରେ ତୁମ ରୂପଛବି ଫୁଟା ଯେ ବ୍ୟର୍ଥ ହୋଇଯିବ, ଶ୍ରବଣ ଶକ୍ତି ହଜିଗଲେ ମୋ ହାତରେ ତୁମେ ଧରାଇଦେଇ ଯାଇଥିବା ଏ ମୋହନ

ବେଣୁରେ ନିନାଦିତ ତୁମ ହୃଦୟର ଆବେଗ ନିଃସ୍ୱନ ଯେ ସ୍ୱରହୀନ ହୋଇଯିବ, ଏ ଦେହ ସ୍ପର୍ଶାନୁଭୂତି ହରାଇ ବସିଲେ ତୁମ ତନୁଗଂଧର ସମୀର ବି ଘ୍ରାଣୁ ରହିଯିବ।

ତୁମେ ଥିବାଯାଏ ତ ମୋ ପୃଥିବୀ ଚିର ବସନ୍ତର ଋତୁ ହୋଇ ରହିଥିବ !

ତୁମେ ଯିବାଦିନୁ ତ ଏ ଗୋପଦାଣ୍ଡର ପ୍ରତି ଧୂଳିକଣାରେ, ଯମୁନାର ପ୍ରତିଟି ତରଂଗ ଖେଳାରେ, ସଂଜ ସକାଳର ପ୍ରତିଟି ସମୀର ସ୍ୱନରେ କେବଳ ଗୋଟିଏ ପ୍ରଶ୍ନକୁ ଅହରହ ଭେଟିଛି – ଯେଉଁ ପ୍ରଣୟର ଅହଂକାର ଉପରେ ରାଧାର ଜୀବନ୍ୟାସ, ଶ୍ୟାମର ମଥୁରା ଯାତ୍ରା ପରେ, ବ୍ରଜବାହୁଡ଼ାର କ୍ଷୀଣତମ ସଂଭାବନା ନଥିବାବେଳେ, କେଉଁ ଆଶ୍ୱାସନାରୁ ନିଶ୍ୱାସ ପବନରେ ରାଧା ଏ ଯାଏଁ ବଂଚିରହିଛି !

କାହାକୁ କିପରି ବୁଝାଇପାରିବି ପ୍ରେମ ଝରାପତ୍ର ନୁହେଁ ଯେ ଦଲକାଏ ପବନରେ ଉଡ଼ିଯିବ। ପ୍ରେମ ତ ବଟବୃକ୍ଷ। ସବୁ ଝଡ଼ ବତାସରେ ମୁଣ୍ଡ ଟେକି ଆକାଶକୁ ଚାହିଁଥିବ।

ରାଧାର ହୃଦୟ ଯଦି ଏତେ ଦୁର୍ବଳ, କୃଷ୍ଣର ପ୍ରେମକୁ ସେ କିପରି ଆସ୍ପର୍ଧା କରିଥାନ୍ତା ?

ଯେଉଁ ପ୍ରେମ ଆପଣାର ବାହାରେ ଆଉ କିଛି ବି ଆଶ୍ରୟ ପାଏନାହିଁ, ଆପଣାକୁ ସେ କିପରି ସଂଭାଳେ, ସେଇ ପ୍ରଶ୍ନର ଉତ୍ତର ପାଇଁ ତ ରାଧାର ଜନ୍ମ।

ତୁମର ବିଚ୍ଛେଦ ସହି ପାରିବି ନାହିଁ ବୋଲି ପ୍ରାଣ ବିସର୍ଜନ କରିବି, ସେ କି ପ୍ରାଣ ? ତୁମର ବିପୁଳ ପ୍ରେମକୁ ସେ ଦୁର୍ବଳ ପ୍ରାଣ ତେବେ କିପରି ଧାରଣ କରିବ ? ଯମୁନା ତ ଶୀତଳ ଆଶ୍ରୟ ଠିକ୍ ଦେଇପାରିଥାନ୍ତା; ମାତ୍ର ଏବେ କେଉଁଠାରେ, କାହା ହୃଦୟରେ ତୁମ ନାମର କଳକଲ୍ଲୋଳ ଏପରି ଉଚ୍ଛ୍ୱାସ ମୁଖରିତ ହେଉଥାନ୍ତା ?

ଶ୍ୟାମ ବିରହରେ ଯମୁନା ଶୁଖିଗଲା। ମାତ୍ର ରାଧାର ଲୁହ ସେ ବାଲିକୁ ଓଦା କରି ରଖିଛି। ଯମୁନାର ଶୁଖିଲା ଛାତି ଆଉ ରାଧାର ଭିଜା ଆଖିରେ ଯେ ବ୍ରଜ-ପ୍ରେମର ସାର୍ଥକତା।

ବିରହର ଉଜାଣି ଯମୁନାରେ ରାଧାପ୍ରାଣର ପ୍ରୀତିରୋଳ ବାଜିଉଠିବ। ତା ଆଖିର ତପ୍ତ ବାଷ୍ପରେ ଆକାଶ ବି ମେଘସଜଳ ହୋଇଉଠିବ। ଶ୍ୟାମର ନୀଳଘନକାନ୍ତି ଦ୍ୱାରାବତୀରୁ ଗୋପ ଛାତିକୁ ମେଘର ରଂଗଧାରା ହୋଇ ଓହ୍ଲାଇଆସିବ। କୃଷ୍ଣ ଯେଉଁଠି ଥାନ୍ତୁ, ଯେଭଳି ଥାନ୍ତୁ ନା କାହିଁକି, ରାଧାର ବୃନ୍ଦାବନରେ ସେ ତ ଘନଶ୍ୟାମ ହୋଇ ଆବିର୍ଭୂତ ହେବେ। ସେ ଶ୍ୟାମଳ ରୂପକୁ ଠିକ୍ ସେମିତି ଆଉ କେହି ଚିହ୍ନିପାରିବେ ନାହିଁ। ସେ ଶ୍ୟାମପ୍ରେମ ପାଇଁ ଆଉ ଗୋଟିଏ ରାଧାର ହୃଦୟ ଆଉ କେଉଁଠି ବି ଏମିତି ଉଚ୍ଚାଟ ହୋଇଉଠିବ ନାହିଁ।

ଶ୍ୟାମ ପାଇଁ ବ୍ରଜବାଳା ବା ଦ୍ୱାରକାଂଗନା କାହା ସହ ରାଧା ପ୍ରତିଦ୍ୱନ୍ଦ୍ୱିତା କରିବ ? ଗୋପଦାଣ୍ଡ, ଯମୁନାତଟ, କେଳିକଦଂବ ଆଉ କିଶୋର କୃଷ୍ଣ – ଏମାନେ ଏକତ୍ର କେବଳ ରାଧା ହୃଦୟରେ ଯେଉଁ ଭାବସଂଚାର କରନ୍ତି ସେଭଳି ହୃଦୟଟିଏ ସେମାନଙ୍କ ପାଇଁ ଆଉ ତ୍ରିଭୁବନରେ କେଉଁଠି ଅଛି ?

ରାଧା ମନର ତାରୁଣ୍ୟକୁ ତୁମ ଛଡ଼ା ଆଉ କେଉଁ କିଶୋର ପ୍ରଣୟ ଛୁଇଁପାରିଛି ?

ଶ୍ୟାମ, ରାଧା ପାଖରେ ଯେଉଁ ହୃଦୟକୁ ଭେଟିଛ, ପାଇଛ ଆଉ ସେଭଳି ପ୍ରୀତିବିହ୍ୱଳ ହୃଦୟଟିଏ ? ପ୍ରେମରେ ମିଳାଇଯାଉଥିବା ଅହୋରାତ୍ର ବ୍ୟାକୁଳତାଟିଏ ?

ଏବଂ ରାଧାର ପ୍ରେମ ଛଡ଼ା ଶ୍ୟାମର ଏକାଂତ ନିଜସ୍ୱ ଏ ଧରାଧାମରେ ଆଉ କ'ଣ ଅଛି ? ସେ ପ୍ରେମ ତ ଶ୍ୟାମକୁ ଏଠି ଧରିରଖିଛି । ସେ ପ୍ରେମ ମରିଗଲେ ଶ୍ୟାମର ଶେଷ ଅବଲଂବନଟିକ ହଜିଯିବ । ଶ୍ୟାମକୁ ଶୂନ୍ୟକରି, ଅପବାଦଗ୍ରସ୍ତ କରି ତା'ର ପ୍ରୀତିର ଅହଂକାରକୁ ଦୁନିଆଁର ଦାଣ୍ଡଧୂଳିରେ ଲୋଟାଇ ରାଧା କିପରି ଗରବିଣୀର ଅଭିମାନରେ ପ୍ରାଣ ବିସର୍ଜନ କରିବ ?

ମୋର ତ କେବେ କେଉଁଠି କିଛି ସ୍ୱୀକୃତି ନଥିଲା । କେବଳ ପ୍ରେମର ସ୍ୱୀକୃତିନେଇ ବଂଚିଛି । ତୁମ ପ୍ରେମ କିପରି ସେତିକି ତୁମେ ଜାଣିବା ପାଇଁ ତ ରାଧାର ଦେହଧାରଣ । ସେ ପ୍ରୀତିକୁ ତୁଚ୍ଛ କରିଦେଇ, ପୃଥିବୀରେ ପ୍ରେମର ଭବିଷ୍ୟତକୁ ପୋଛିଦେଇ ରାଧା ଦୁଃଖରେ ପ୍ରାଣ ବିସର୍ଜନ କଲେ କୃଷ୍ଣ କେଉଁଠି ନିଜ ପାଇଁ ହୃଦୟ ଖୋଜି ପାଇବ ? ଶଯ୍ୟାକୁ ତ୍ୟାଗକଲେ ଧାରା କିପରି ପ୍ରବାହିତ ହେବ ?

ଶ୍ୟାମର ପ୍ରେମ ତ ସାମାନ୍ୟ ନୁହେଁ । ସେ ଭାରକୁ ବହନ କରିବାର ଶକ୍ତି କେବଳ ରାଧାର ଅଛି । କୃଷ୍ଣ ଭଳି ପ୍ରଣୟ ଉଚ୍ଛ୍ୱାସକୁ ବହନ କରିବ ବୋଲି ତ, ସ୍ପଂଦନରେ ସଂବହନ କରିବ ବୋଲି ତ ରାଧାର ହୃଦୟ ଏତେ ଭାବ-ପ୍ରସାରିତ ହୋଇପାରିଛି ।

ସେ ପ୍ରେମକୁ ନିରାଶ୍ରୟ କରି, ଗ୍ଲାନିପୀଡ଼ିତ କରି, ଶ୍ୟାମକୁ ଦୁଃଖୀ କରି ରାଧା ମରିପାରେନା – ବରଂ କାନ୍ଦିପାରେ ।

ଅନର୍ଗଳ କନ୍ଦାଇଛି ବୋଲି ତ ସେ ପ୍ରେମ ଏମିତି ମଧୁରତମ, ଆପଣାତମ ହୋଇପାରିଛି ।

ରାଧା କିଂତୁ ତୁମ ପାଖରୁ ତା'ର ଆଖିଲୁହର ମୂଲ୍ୟ ମାଗିବ ନାହିଁ ।

ହିସାବର ନଥିପତ୍ରରେ ସାରା ଜୀବନ ପୃଥିବୀ ପାଖେ ବଂଧା ପଡ଼ିଛି । ରାଧାର ହୃଦୟଟି ଅନ୍ତତଃ ପୃଥିବୀର ହିସାବ ବାହାରେ କେବଳ କୃଷ୍ଣର ହୋଇ ରହିଥାଉ ।

ପୃଥିବୀରେ ଜନ୍ମ ହୋଇ, ନାରୀର ଦେହଟିଏ ଧରି ଶ୍ୟାମର ଯେଉଁ ପ୍ରେମକୁ ମୁଁ ହୃଦୟରେ ଲାଭ କରିଛି, ପ୍ରେମର ଯେଉଁ ଐଶ୍ୱର୍ଯମୟ ଆବିର୍ଭାବକୁ ମୁଁ ମୋ କ୍ଷୁଦ୍ର ଅନୁଭବରେ ପ୍ରତ୍ୟକ୍ଷ କରିଛି, ତାକୁ ସାମାନ୍ୟ କିପରି କହିବି ? ମୋ ପ୍ରାଣର ସର୍ବୋତ୍ତମ, ସୁନ୍ଦରତମ, ମଧୁରତମ ଆସ୍ପୃହାଟିରେ ଯେ ତା'ର ଅସାମାନ୍ୟ ସଂଭାବନାର ମହନୀୟ ଅଭିଷେକ ସଂପନ୍ନ ହୋଇଯାଇଛି, ପୃଥିବୀର ରାଧାକୁ ତାହାହିଁ ପାର୍ଥିବ ଜୀବନର ଅପାର୍ଥିବ ଦାନ ।

ହେ ଅକ୍ଷୟଦାନୀ ! ସମସ୍ତଙ୍କୁ ସବୁ ଦେଇ ତୁମେ ପୂର୍ଣ୍ଣ କରିପାର । ମାତ୍ର ରାଧାବିନା ଆଉ କାହାକୁ ଏଭଳି ବିରହର ଦାନ ନେଇ ଚିରାନୁଗତା କରିରଖିବ ?

ରାଧାଠାରେ ସବୁ ବିରହର ଶେଷ ନା ଆରମ୍ଭ ମାତ୍ର ?
ବିରହ ଯେତେବେଳେ ଦେହ ଧାରଣ କରେ, ତା'ର ନାମ ହୁଏ ରାଧା !

× × × ×

ଶ୍ୟାମ, ପାଖରେ ଥାଅ କି ଦୂରରେ ଥାଅ, ହୃଦୟରୁ କିଂତୁ ଦୂର କରି ଦିଅନାହିଁ। ମୋ ବଂଚିବାର ସବୁ ସାର୍ଥକତା ତ ସେଇଠି, ଯେଉଁଠି ରାଧା ନାମଟି ଓଠରେ ଉଚ୍ଚାରିତ ହେଉ ନ ହେଉ ଛାତିର ସ୍ପଂଦନ ହୋଇ ପ୍ରାଣପବନରେ ସଂଚାରିତ ହେଉଥିବ। ସେଦିନ ତୁମର ମଥୁରା ଯାତ୍ରା ବେଳେ ବିରହର ଭୟ ମତେ ବ୍ୟାକୁଳ କରୁଥିଲା। ଆଜି କିଂତୁ ତୁମେ ମତେ ଛାତିରୁ କାଢ଼ି ଫିଙ୍ଗିଦେଲେ ଏ ବିରହ ମଧ୍ୟ ଅର୍ଥହୀନ ହୋଇଯିବ। ବିରହକୁ ଯେ ବଂଚିବାର ଏକମାତ୍ର ସଂବଳ କରିପାରିଛି, ତା ପାଇଁ କ'ଣ ବିସ୍ମୃତିର ନିଷ୍ଠୁରତା ସାଜେ ?

ସେଦିନ ତୁମକୁ ଆଖି ଆଗରୁ ହରାଇ ଅଂଧ ହୋଇଯିବାର ଭୟରେ ତ୍ରସ୍ତା ଥିଲି। ଆଉ ଆଜି ମୋର ଅଂଧ ଆଖି ଆଗରେ ତୁମେ ଏକମାତ୍ର ଦୀପ ହୋଇ ଜଳୁଛ। ସେ ଦୀପ ଯଦି ଲିଭିଯାଏ, ତୁମ ପ୍ରେମ ଯଦି ମତେ ପରିତ୍ୟାଗ କରେ, ତୁମ ଭିତରୁ ଯଦି ମୁଁ ମରିଯାଏ ତାହା ତ ରାଧାର ଯଥାର୍ଥ ମୃତ୍ୟୁ ହେବ।

ବଂଚିବା ପାଇଁ ଯେ ପୃଥିବୀରେ ଟିକେ ଦୁଇପାଦର ଭୂମି ଲୋଡ଼ା, ସେ ଭୂମି ତ ପ୍ରେମର ହୃଦୟ। ଏକମାତ୍ର ତୁମ ହୃଦୟର ବିନ୍ଦୁପ୍ରାୟ ଭୂମିରେ ବଂଚିଥିବା ରାଧାର ସେ ଆଶ୍ରାଟିକ ଅସ୍ୱୀକୃତ ହୋଇଗଲେ, ରାଧା ଆଉ କେଉଁଠାରେ ପ୍ରାଣର ପରିସ୍ପଂଦନ ଶୁଣିବ ? ପ୍ରଣୟର ପ୍ରତିଧ୍ୱନି ଖୋଜିବ ?

ଶ୍ୟାମ, ଏଭଳି ଦୁର୍ଭାଗ୍ୟ ନହେଉ, ରାଧାକୁ କେବେ ଶ୍ୟାମ ପ୍ରେମ 'ମିଛ' ବୋଲି ଶୁଣିବାକୁ ନପଡୁ। ବରଂ ରାଧା ମିଛ ହୋଇଯାଉ। ତା'ର ଜନ୍ମ ଜୀବନ ନିରର୍ଥକ ହୋଇଯାଉ। ମାତ୍ର ତା ଜୀବନର ଏକମାତ୍ର ସତ୍ୟ ଶ୍ୟାମପ୍ରେମ ଦୁନିଆଁ ଆଖିରେ 'ମିଛ' ଅପବାଦଗ୍ରସ୍ତ ହୋଇନଯାଉ।

ତୁମକୁ ଆସିବାକୁ କହିପଠାଉନାହିଁ। ତୁମ ଅପେକ୍ଷାରେ ଅଛି ବୋଲି ମଧ୍ୟ ଜଣାଉନାହିଁ। ତୁମକୁ ଆଉ କେବେ ମୋ ପ୍ରେମର ଦ୍ୱାହି ଦେବିନାହିଁ। ମୋ ପ୍ରେମର ଯଦି କିଛି ମାନ ଥାଏ, ତୁମ ପ୍ରେମର ଯଦି କିଛି ମୂଲ୍ୟ ଥାଏ, ସ୍ୱୟଂ ପ୍ରେମର ଆପଣାପାଖେ ଯଦି କିଛି ସ୍ୱୀକୃତି ଥାଏ, ତେବେ ସେଇ ପ୍ରେମର ଶକ୍ତି ହିଁ ତାକୁ ଆପଣାପାଖେ ଟୁପ୍ କରାଇଦେବ।

ସାରା ଜୀବନର ସବୁ ପ୍ରଶ୍ନର ଉତ୍ତର ଏଇ ଯେ ମହାମୌନତା, ତାହାହିଁ ବୋଧହୁଏ ପ୍ରେମର ନିଜ ଭାଷା।

ବୁଝିନେବାକୁ ହେବ ଯେ, ଲହରୀମାନେ ଫେରିଆସୁଥିବେ ମଝି ସମୁଦ୍ରକୁ, ତୀରଭୂଇଁ ଉତ୍ତର ଦେବନାହିଁ।

ପୃଥିବୀ ବଂଧାପଡ଼ିଥିବ ଆପଣା ପାଦରେ, ତା ଆଖିର ନିର୍ନିମେଷତାକୁ ଆକାଶ ଉତ୍ତର ଦେବନାହିଁ।

ଶ୍ୟାମ, ବିଶ୍ୱଜନ ସମ୍ମୁଖରେ, ବିସ୍ତାରିତ ଆକାଶତଳେ, ପ୍ରସାରିତ ଧରିତ୍ରୀ ବକ୍ଷରେ, ଚନ୍ଦ୍ରସୂର୍ଯ୍ୟ ଗ୍ରହତାରକାଙ୍କ ଉପରେ ଆଖି ରଖି ମତେ କେବଳ ଥରେ କହିବାର ଅଧିକାର ମିଳୁ ଯେ 'ମୁଁ ତତେ ଭଲପାଏ'। ଆଉ ସେହି ଭଲପାଇବା ହିଁ ମତେ ସବୁଦିନ ତୋ ପାଖେ ଚୁପ୍ କରାଇଦେବ।

ପ୍ରେମର ଭାଷା ଯଦି ନୀରବତା, ତେବେ ସେ ପ୍ରତ୍ୟୁତ୍ତରହୀନ ହୋଇ ରହିବନାହିଁ। ନୀରବତାରେ ହିଁ ହୃଦୟରୁ ହୃଦୟାଂତର ସଂଚରି ଆସିବ।

× × × ×

କହିଥିଲନା, ସବୁ ଚୁପ୍ ହୋଇଗଲା ପରେ ଆସିବ! ଶୁଣିବ ଓ ଶୁଣାଇବ – କଥା ନୁହେଁ, ନୀରବତାର ସଂଗୀତ।

ଚୁପ୍ ହୋଇଯିବ ଆକାଶର ପବନ ଓ ସମୁଦ୍ରର ଲହରୀ ସ୍ୱନ। ଚୁପ୍ ହୋଇଯିବ ମନ ଓ ପ୍ରାଣର ତରଂଗ ଉଚ୍ଛ୍ୱାସ। ଚୁପ୍ ହୋଇଯିବ ଦେହର ଅରଣ୍ୟକାକଳି। ନିସ୍ତବ୍ଧ, ଶୂନ୍‌ଶାନ୍ ଗୋହିରୀରେ ତୁମର ସେ ଆସିବା; ଅପେକ୍ଷା ମୂକ ହୋଇଯାଇଥିବ, ଆଖି ପ୍ରଶ୍ନହୀନ।

ଅପେକ୍ଷାର ଏ ନୂଆରୂପ। ଆଖିରେ ନୁହେଁ, ରାସ୍ତାକୁ ନୁହେଁ। ଦେହର ରୋମାଂଚ, ସ୍ନାୟୁର ଉଚ୍ଚାଟନ, ପ୍ରାଣର ତନ୍ମୟତାରେ ନୁହେଁ, ସହଜ ସରଳ ପ୍ରତ୍ୟୟର ନିଶ୍ଚିତତାରେ ଅପେକ୍ଷାର ଏ ଭିନ୍ନରୂପ।

ଅପେକ୍ଷାର ସରଳ ବିଶ୍ୱାସରେ ଏ ପୃଥିବୀ ବଂଚିଛି। ଅପେକ୍ଷାର ଆଶା ହିଁ ତା'ର ବଂଚିବାର ନିଶାଗ୍ରସ୍ତତା। ସେ ନିର୍ବୋଧତା (?) ଟିକକ ଯଦି କେବେ ଛାଡ଼ିଦିଏ, ସେଦିନ ପୃଥିବୀର ଯଥାର୍ଥ ମୃତ୍ୟୁ ହେବ।

ଅପେକ୍ଷାରେ ଅଛି। ଅପେକ୍ଷା ନକରି କିପରି ରହିହୁଏ, ଅପେକ୍ଷା କିପରି ନ କରିବାକୁ ହୁଏ – ଜାଣିନାହିଁ ବୋଲି।

ମୋର ଏ ଅପେକ୍ଷା ତୁମର ଆସିବାର ସର୍ତ୍ତ ନୁହେଁ, ତୁମର ନିର୍ବାଧ ସ୍ୱାଚ୍ଛନ୍ଦ୍ୟକୁ ମୋର ନିଃସର୍ତ୍ତ ମାନିନେବା ମାତ୍ର।

କେବେ ବି ବାଂଧିବାକୁ ଚାହିଁନାହିଁ, ବିଶ୍ୱାସକର। ତୁମର ବଂଧନର ଛଟପଟକୁ ମୁଁ ମଧ୍ୟ ସହ୍ୟ କରିପାରନ୍ତି ନାହିଁ। ତୁମ ପାଇଁ ମୁକ୍ତିର ଆକାଶ କେଡ଼େ ବିଶାଳ, ବିହାରର ପୁଳିନ କେଡ଼େ ବିସ୍ତୀର୍ଣ୍ଣ, ହିଲ୍ଲୋଳ କଲ୍ଲୋଳର ଉଚ୍ଛ୍ୱାସ ଓ ନିସ୍ତରଂଗତାରେ, ଶାମୁକା ଓ ମୁକ୍ତାପ୍ରବାଳରେ, ବାଡବାଗ୍ନି ଓ ସୁଧା ଶୀତଳତାରେ କେଡ଼େ ବିଚିତ୍ର ଅନୁଭବ ମଧୁର, ତାହାରି ପାଇଁ ମୁଁ ମୋର ହୃଦୟର ଶଯ୍ୟାକୁ ପାତିଦେଇଛି।

ହୃଦୟକୁ ତୁମର ପାଦତଳେ ସମର୍ପିଦେବା ପରେ, ତା'ର ସୁଖଦୁଃଖକୁ ପ୍ରେମର ଆଂଜୁଳିରେ କୁଢ଼ାଇଦେବା ପରେ, ନିଜ ପାଇଁ ଆଉ କ'ଣ ଦାବୀ କରିବି ?

ମୋର ଲୋଭୀ ଦୁରାଶା ତୁମକୁ ଗୋଟିଏ କାହିଁକି ସହସ୍ର ଅଂଗୀକାରରେ ବନ୍ଦୀ ରଖିବାକୁ ପ୍ରଲୁବ୍ଧ ହୋଇଛି। ମାତ୍ର ମୋର ପ୍ରେମ ତୁମର ପକ୍ଷ ବଂଧନ କରିବନାହିଁ। ଆକାଶର ନୀଳ ଉନ୍ମୁକ୍ତି ତୁମ ଆଖିରେ ମେଲିଯାଉଥିବା ବେଳେ ମୁଁ ତୁମକୁ ଫୁଲ-ପଞ୍ଜୁରି ପ୍ରଲୋଭନ ଦେଖାଇବି ନାହିଁ। କେବଳ ଏତିକି ଜାଣେ ଯେ ସେ ଆକାଶର ଏପାଖ ସେପାଖ ମୁଁ ଅପଲକ ଦୃଷ୍ଟିରେ ଚାହିଁରହିଥିବି। ତୁମର ଛାଇ କାଳେ କେତେବେଳେ ସେ ନୀଳକୁ ପହଁରି ମତେ ଛୁଇଁଯିବ, ମୋ ଆଖିରେ ଆଖି ମିଳାଇଯିବ, ମୋ ଆଖିର ନୀଳସ୍ୱପ୍ନକୁ ଆକାଶର ସୁନୀଳତା ସହ ଏକ କରି ଦେଖିବ, ସେଥିପାଇଁ ତଳେ ମୁଁ ମୋର ଶ୍ୟାମ ଦୁକୂଳ ବିଛାଇ ବସିଛି। ତୁମକୁ ତୁମର ଲୀଳାବିହାରର ସୌଭାଗ୍ୟ-ବଂଚିତ କରିବି ନାହିଁ। ଯମୁନାର କାକକୃଷ୍ଣ ଲହରୀର ମୋହ ସାଗରର ସୁନୀଳ ଆକର୍ଷଣ ସହ ପ୍ରତିଦ୍ୱନ୍ଦ୍ୱିତା କରିବନାହିଁ। ବ୍ରଜମାଧୁର୍ଯ୍ୟ ପ୍ରଲୋଭନର ବେଢ଼ି ହୋଇ ଦ୍ୱାରାବତୀର ଐଶ୍ୱର୍ଯ୍ୟସାଜରୁ ତୁମକୁ ବଂଚିତ କରିବନାହିଁ।

ତୁମେ ବ୍ରଜ ବୃନ୍ଦାବନରେ ଲୀଳା ରଚୁଥାଅ ବା ମଥୁରା ଦ୍ୱାରକାର ରାଜବୈଭବ କଳୁଥାଅ, ହସ୍ତିନା ଇନ୍ଦ୍ରପ୍ରସ୍ଥର ଭାଗ୍ୟ ସଜାଡୁଥାଅ କି ପ୍ରଭାସ ତୀର୍ଥରେ ପୁଣ୍ୟ ସଂଚୟ କରୁଥାଅ, (ତୁମେ ମୋ ପାଖରେ ଥାଅ ବା ନଥାଅ), ତୁମେ ଅଛ। ଏଇଥିପାଇଁ ତ ଏ ପୃଥିବୀ ଏଡ଼େ ମଧୁମୟ। ତୁମେ ଅଛ, ଏ ମାଟିର ଉଷ୍ଣତାରେ, ଆକାଶର ଶୀତଳତାରେ। ଧରିତ୍ରୀର ପାଣି ପବନକୁ କୃତାର୍ଥ କରି ତୁମେ ଆତଯାତ ହେଉଛ। ତୁମ ଭିତରର ନିଃଶ୍ୱାସ, ତୁମ ଦେହର ସୁବାସ, ତୁମ ମନର ମଧୁରତା ଓ ତୁମ ଦୃଷ୍ଟିପାତର ପ୍ରସନ୍ନତା ଏ ଧରଣୀର କଣକଣକୁ ଅପରୂପ କରିରଖିଛି। ଯେଉଁଠି ବି ଥାଅ, ଯେମିତି ବି ଥାଅ, ମୋର ହୋଇ ଥାଅ ବା ନଥାଅ– ତୁମକୁ ଛାଡ଼ି, ତୁମପାଇଁ ଏ ପୃଥିବୀକୁ ଛାଡ଼ି ମୁଁ କୁଆଡ଼େ ଯାଇପାରୁନାହିଁ। ତୁମେ ମୋର ବଂଧନ, ମୋର ମୁକ୍ତି ବି। ମୃତ୍ୟୁର ପ୍ରଲୋଭନରୁ ତୁମେ ମତେ ମୁକ୍ତ କରି ରଖିଚ, ଆଉ ସେ ମରଣ ଦିନେ ତୁମ ରଂଗରେ ସାଜିହୋଇ ମୋ ପାଇଁ ପରମ ବରଣୀୟ ହୋଇ ଆସିବ।

ଯୁଗ ଯୁଗ ଧରି ଏ ପୃଥିବୀ ମୃତ୍ୟୁପାଖେ ତା ପ୍ରେମରେ ପରାଜୟ ବରଣ କରିଆସିଛି। ମାତ୍ର ଏବେ ପ୍ରଥମକରି ପୃଥିବୀର ପ୍ରେମ ପାଖେ ମୃତ୍ୟୁ ପରାଜିତ ହୋଇଗଲା। ତୁମ ପରେ ମୃତ୍ୟୁପାଖେ ପୃଥବୀକୁ ଆଉ ପ୍ରେମର ପରୀକ୍ଷା ଦେବାକୁ ହେବନାହିଁ। ମୋ ପରେ ଆଉ ମହାକାଳ ପାଖେ ପ୍ରଣୟକୁ ପ୍ରତୀକ୍ଷାର ପରୀକ୍ଷା ଦେବାକୁ ହେବନାହିଁ।

ମୋର ସଖୀ ସହଚରୀମାନେ କୁହନ୍ତି, ମୁଁ କୁଆଡ଼େ ମରଣର ନୀଳଗରଳକୁ ଶ୍ୟାମପ୍ରେମ ବୋଲି ଭ୍ରମରେ ପାନ କରିଛି। ହୋଇପାରେ। ମାତ୍ର ସେ ଗରଳ

ଯଦି ତୁମରି ରଂଗ ହୋଇଥାଏ, ତେବେ ତାକୁ ପାନ ନକରି ମୁଁ କିପରି ରହିପାରିଥାନ୍ତି ? ଏବଂ ତୁମ ରଂଗକୁ ଧାରଣ କଲେ ଗରଳ କ'ଣ ଆଉ ଗରଳ ହୋଇ ରହିପାରେ ?

ତୁମେ ମତେ ଯାହା ଦେବ, ତା କ'ଣ ହଳାହଳ ହୋଇପାରେ ?

ବିଷ ଅମୃତର ବିଚାର ଆଉ କରିବାକୁ ହେବନାହିଁ। ପାତ୍ରଟି ଥରେ ପତାଇଦେବା ପରେ ତୁମେ ସେଥିରେ ଯାହା ଦେବ ସବୁ ଅମୃତ ହୋଇଯିବ।

ସବୁ ଆଶା ଜଳାଂଜଳି ଦେଇସାରିବା ପରେ ବିଶ୍ୱାସର ସୂତାଖିଅଟିଏରେ ମୁଁ ଝୁଲୁଛି, ତାକୁ ବିସର୍ଜନ ଦେବି କିପରି ?

ଜୀବନ ହୁଏତ ମୃତ୍ୟୁକୁ ଧାରଣ କରିପାରିବ ନାହିଁ। ମାତ୍ର ପ୍ରେମ କେବଳ ଦୁଃଖ ନୁହେଁ, କେବଳ ସୁଖ ନୁହେଁ, ମୃତ୍ୟୁ ସମେତ ସ୍ୱୟଂ ଜୀବନକୁ ଧାରଣ କରିନେବ। ମୃତ୍ୟୁକୁ ଅମୃତ କରିଦେବ।

ତୁମେ ତ ସେ ମରଣାଂତ ପ୍ରେମ !

× × × ×

ଆଜିକାଲି ତୁଣ୍ଡ ଖୋଲିବାକୁ ବି ଡରଲାଗେ।

ଶବ୍ଦମାନେ ଅର୍ଥବଂତ : ଅର୍ଥମାନେ ଭାବଦୀପ୍ତ : ଭାବ ସବୁ ରୂପ-ଉଦ୍‌ଭାସିତ।

ସମୟ ଏବେ ସବୁ ସମୟ, ସମୟ ଏବେ ଏକ ନିମେଷ ମାତ୍ର।

ସମୟ-ପ୍ରବାହର ସେଇ ସ୍ଥିର ତଟରେ ମୁଁ ଏବେ ଠିଆହୋଇଯାଇଛି ଯେଉଁଠି ମୁଁ ତୁମ ଭିତରେ ଅଛି କି ନା, ତା ଆଉ ତୁମକୁ ମୋର ପ୍ରଶ୍ନ ନୁହେଁ– ମୋ ଭିତରେ ତୁମେ ପ୍ରେମ-ସ୍ୱରୂପ ହୋଇ ବିରାଜମାନ କରିଛ, ଏଇଟା ହିଁ ଶେଷକଥା।

ଏବେ ତ ଗୋଟାଏ ଅମୁହାଁ ଦେଉଳର ନିବୁଜ ନିକାଂଚନତାରେ, କେବଳ ମୁଁ ଆଉ ମୋ ପ୍ରେମ। ହୃଦୟର ପୂଜା ବେଦିରେ ପ୍ରତିଷ୍ଠିତ ଏକମାତ୍ର ପ୍ରେମରୂପ ଓ ତାଙ୍କୁ ଅନିମେଷ ଦେଖୁଥିବା ଏକାକୀ ମୁଁ। ସେ ପ୍ରେମ-ବିଗ୍ରହ ଯଦି ତୁମର ରୂପ-ସାମଂଜସ୍ୟ ଲାଭ କରିଥାଏ, ସେଥିରେ କାହାରି, ଏପରିକି ତୁମର ମଧ୍ୟ ପ୍ରଶ୍ନ କରିବାର କିଛି ନାହିଁ।

ସେ ରୂପରୁ ବିଚ୍ଛିନ୍ନ ହୋଇ ତୁମେ ପ୍ରଶ୍ନକାରୀର ଭୂମିକାକୁ ଓହ୍ଲାଇ ଆସିଲେ ମୁଁ ବା କାହିଁକି ତୁମକୁ ଚିହ୍ନିବି ? ତୁମର କି ପରିଚୟକୁ ସ୍ୱୀକୃତି ଦେବି ? ତୁମ ସହ କି ସଂବଂଧକୁ କାହିଁକି ଅଂଗୀକାର କରିବି ?

ପ୍ରେମର ସେଇ ରୂପଟି ଛଡ଼ା ପୃଥିବୀରେ ଆଉ କୋଉ ଭିନ୍ନ ରୂପକୁ ବା ମୁଁ ଚିହ୍ନିଛି ? ପ୍ରେମ ତୁମର ନିଜ ରୂପ ନା ତୁମେ ପ୍ରେମର ନିଜ ରୂପ ତା ମତେ ଜଣାନାହିଁ, ମାତ୍ର ପ୍ରେମ ତୁମ ଛଡ଼ା ଆଉ କେଉଁ ରୂପ ଧରି ଆସିପାରିଥାନ୍ତା ବୋଲି ମୁଁ ଭାବିପାରେନାହିଁ।

ସେ ପ୍ରେମ ଶତ୍ରୁ ଭଳି ପୀଡ଼ା ଦେଇଛି। ବାସନାନଳ ହୋଇ ଦଗ୍ଧ କରିଛି। ମୋହମୟ ଦୁରାଶା ହୋଇ ସର୍ବସ୍ୱାଂତ କରିଛି। ଭଗ୍ନ ଆଶା ହୋଇ ଜୀବନ୍ମୃତ ବି କରିଛି।

ଆଜି କିଂତୁ ସମ୍ମୁଖରେ ଅମୃତମଧୁର ଜୀବନାଶା ହୋଇ ମହାମହିମାରେ ଉଭା ହୋଇଆସୁଛି। ପ୍ରସନ୍ନଦୀପ୍ତ ଆଲୋକ ପ୍ରବାହ ଭିତରକୁ ମତେ ଠେଲି ଠେଲି ନେଉଛି।

ବହୁ ବିଗତ ଜନ୍ମର, ପୁଣ୍ୟକ୍ଷଣମାନଙ୍କର ସୁଦୁର୍ଲଭ ଫଳଶ୍ରୁତି— ଏ ମୋର ପ୍ରେମ।

ଧରାଧାମରେ ଜୀବନର ଏକମାତ୍ର ମହତ୍ତମ କର୍ମ ତ ପ୍ରେମ। ଦୁଃସାଧତମ! ପ୍ରିୟତମ! ସେ ଦୁର୍ଲଭ ମଧୁରାନୁଭବରେ ଅଧିକାରୀ କରାଇ ତୁମେ ମତେ ଧନ୍ୟ କରିଚ।

ପ୍ରେମକୁ ଜାଣିନଥିଲେ ଆକାଶର ଭାଷା କିପରି ଶୁଣିଥାନ୍ତି? ତାରାର ଆଖିକୁ କିପରି ଦେଖିଥାନ୍ତି? ବର୍ଷାବିନ୍ଦୁ ସହ କିପରି କଥା ହୋଇଥାନ୍ତି? ଏ ଧରିତ୍ରୀର ନିବିଡ଼ ସ୍ପର୍ଶକୁ କିପରି ବୁଝିଥାନ୍ତି ଓ ବଂଚିବାର ଅନିର୍ବଚନୀୟ ମଧୁରତାକୁ କିପରି ଆସ୍ୱାଦନ କରିଥାନ୍ତି?

ଗୋଟାଏ ଅନୁଭବର ସ୍ପଂଦନରେ ତ ସମଗ୍ର ଜଗତ ପ୍ରାଣବଂତ ହୋଇଯାଇଛି। ମୋ ଭିତରେ ତୁମେ ଉଚ୍ଚାରିତ ହୋଇନଥିଲେ ମୁଁ ଜୀବନକୁ କ'ଣ ବୁଝିଥାନ୍ତି?

ମନ ଯାହାକୁ ଦିନଦିନ ଧରି ବୁଝିବିଚାରି ମୋହଭ୍ରାଂତି କହି ଶୂନ୍ୟ କରିଦିଏ, ହୃଦୟ ତାହାକୁ ଆପଣାର ମଧୁର ଅନୁଭବରେ ନିମିଷକେ ପୂର୍ଣ୍ଣ କରିଦିଏ।

ହୃଦୟରେ ପ୍ରେମର ଅଭିଷେକ ହୋଇଗଲେ ତୁଚ୍ଛାତିତୁଚ୍ଛ ବି ପ୍ରାଣସାର ହୋଇଯାଏ।

ମୁଁ ଜାଣେ, ବ୍ରଜ-ରାସର ସେ ମଧୁର ଅତୀତ ଆମପାଇଁ ଆଉ ଫେରିଆସିବ ନାହିଁ। ଦ୍ୱାରକାର ଐଶ୍ୱର୍ଯ ଅଭିଷେକ ବ୍ରଜ-ଦାଣ୍ଡରେ ସଂଭବ ହେବନାହିଁ ଏବଂ ଦ୍ୱାରକାଧୀଶଙ୍କୁ ଆଭୀରୀ ରାଧା ବ୍ରଜକିଶୋର ରୂପେ ସମ୍ଭାଳି ପାରିବନାହିଁ। ତୁମ ପ୍ରତି ମୋର ଆଉ କିଛି ଅଭିମାନ ନାହିଁ। ସବୁ ମାନାଭିମାନ ହୃଦୟର ତୀର୍ଥ ଜଳରେ ଧୋଇହୋଇଯାଇଛି। ମୋ ଭିତରେ ତୁମେ ଅନର୍ଗଳ ଲୁହଧାର ହୋଇ ବହିଆସି ହୃଦୟକୁ ପ୍ରଭାସର ନୀଳତୀର୍ଥ କରିଦେଇଛ। ସେ ନୀଳରେ ପୂରାପୂରି ମୁଁ ନିଜକୁ ହଜାଇଦେଇଛି, ଯେମିତି ଜନ୍ମାଂତରରେ ବି ଆଉ ତୁମ ସହ ମୋର ବିଚ୍ଛେଦ ନହୁଏ।

ମୋର କ'ଣ ଆଉ ଜନ୍ମାନ୍ତର ଲୋଡ଼ାଅଛି?

ତୁମର ପ୍ରେମ ତ ମୋ ପାଇଁ ଜନ୍ମଜନ୍ମାଂତରକୁ ଏଇ ଏକ ଜନ୍ମରେ ସାର୍ଥକ କରିଦେଇ ଆକାଶ ବସୁଧା ପ୍ରସାରିତ ହୋଇଯାଇଛି। ପାଦତଳେ ତା'ର ସାଗରର ଅତଳତା, ମଥା ଉପରେ ଆକାଶର ଅନନ୍ତତା। ପାଦ ବଢ଼ାଇଦେଲେ ହିଁ, ଯେତେ ବୁଡି ବୁଡି ଗଲେବି ତା'ର ଅତଳତାରେ ଏକ ସ୍ଥିରନିଶ୍ଚିତ ପରମାଶ୍ରୟ ଉପରେ ଠିଆହୋଇଯିବି। ହାତ ପ୍ରସାରିଦେଲେ ହିଁ ନିଃସୀମ ଉନ୍ମୁକ୍ତି ଭିତରେ ନିର୍ବାଧ ପହଁରିଯିବି।

ବରାଭୟ, ନିର୍ବଂଧନ– ଏହାଛଡ଼ା ଆଉ କୋଉ ମୁକ୍ତି ପାଇଁ ଯୁଗାନ୍ତରର ତପସ୍ୟା ଲୋଡ଼ାହୁଏ ହେ କୋଟି ତପସ୍ୟାର ଧନ !

ଏବେ ତ ଆଶ୍ଚର୍ଯ୍ୟଭାବେ ମୋର ମନେହେଉଛି ଯେ, ତୁମେ ଏବେ ନ ଆସିଲେ ମଲି, ଆସିଲେ ବି ମଲି ।

ନଆସିଲେ ବିରହର ଏକତାନ ଦୁଃଖ ଆର୍ତିର ସ୍ୱର ହୋଇ ନିଜକୁ ବିଦୀର୍ଣ କରିଦେଉଛି । ଆସିଲେ ସହସ୍ର ଅନୁଭୂତିର ରୋମାଂଚ୍‌ରେ ତୁମକୁ ମୋର ପ୍ରତିଟି ରୋମକୂପରେ ଅଜସ୍ର କରି ଭରିନେବାର ବ୍ୟାକୁଳତାରେ ସହସ୍ରଧା ହୋଇ ଫାଟିଯିବି ବୋଲି ଭୟ ହେଉଛି ।

ଅବ୍ୟକ୍ତ ବେଦନାର ଏକାଗ୍ର ନିଃଶ୍ୱାସଟିଏରେ, ସମଗ୍ର ଦେହମନର ଏକତାନ ଉଚ୍ଚକିତତାରେ, କ୍ରନ୍ଦନର ଗୋଟିଏ କୋହୋଚ୍ଛାସରେ, ଲୁହର ଗୋଟିଏ କଂପିତ ବିନ୍ଦୁରେ ତୁମ ବିରହର ତୀବ୍ର ତାପକୁ ଢାଳିଦିଏ, ଯେତେବେଳେ ଜାଣେ ତୁମେ ଆସିଲ ନାହିଁ ।

ଆଉ ବେଳେବେଳେ ରୋମ ରୋମ ଭିତରୁ କେହି ଯେମିତି ବାହାରି, ବିଚ୍ଛୁରିତ ହୋଇ, ତୁମ ସହ ସେହି ଅଜସ୍ର ଖଣ୍ଡରୂପର ନିମଜ୍ଜତାରେ ମିଶିଯିବାକୁ ନିଜକୁ ସହସ୍ର ଖଣ୍ଡ କରିଦେବାର ବ୍ୟାକୁଳତା ଭରିଦିଏ ।

× × × ×

ଶବ୍ଦମାନେ ସରିଆସୁଛନ୍ତି । ଆବେଗମାନେ ମରିଆସୁଛନ୍ତି । ଭାବମାନେ ଅପସରିଯାଉଛନ୍ତି । ରହିଯାଉଛି କେବଳ ଅନୁଭବ । ସିଏ ବି କ'ଣ ଦିନେ ହଜିବାର ବାଟ ଲୋଡ଼ିବ ? ସେଦିନ କ'ଣ ମୋ ହୃଦୟର ପ୍ରେମକୁ ପୂରାପୂରି ହରାଇବସିବି ?

ପ୍ରେମ କ'ଣ କେବଳ ଭାବ ଆବେଗରେ ପ୍ରତିଷ୍ଠିତ ? ଉଦ୍‌ବେଳ-ଲହରୀ କ'ଣ ସମୁଦ୍ରର ଏକମାତ୍ର ପରିଚୟ ? ନିସ୍ତରଂଗତାର ଉଚ୍ଛାସହୀନ ମୁହୂର୍ତରେ କ'ଣ ସମୁଦ୍ର ନିଜ ପରିଚୟ ହଜାଇଦିଏ ?

ସବୁକିଛି ସହ ସମୁଦ୍ରକୁ ଗ୍ରହଣ କରିନେବା ପରେ, ଆଉ ନିଜର ସବୁକିଛି ସମୁଦ୍ରକୁ ସମର୍ପିଦେବା ପରେ, ଅତଳତଳରେ ସମୁଦ୍ର ସହ ଏକାକାର ହୋଇଯିବା ପରେ ବେଳାଭୂଇଁର ଲହରୀ ଛୁଆଁକୁ ଆଉ ଅପେକ୍ଷା କ'ଣ ?

ଏମାନେ ନରହିଲେ ବି ତୁମେ ସେମିତି ରହିଥିବ, ଯେମିତି ଏମାନଙ୍କ ପୂର୍ବରୁ, ମୋ ପୂର୍ବରୁ ବି ତୁମେ ଥିଲ !

ଶବ୍ଦମାନେ କହିନପାରି ସରିଗଲେ । ଭାବମାନେ ଛୁଇଁନପାରି ଅପସରିଗଲେ । ଆବେଗମାନେ ଧରିନପାରି ମରିଗଲେ ।

ପ୍ରେମର ବିସ୍ମୟକୁ ଏମାନେ ସତରେ କିଭଳି ବୁଝିଥାନ୍ତେ ?

କିଭଳି ବୁଝିଥାନ୍ତେ ଯେ ସାରା ଜୀବନର ସବୁ ସ୍ୱପ୍ନ ତୁମକୁ ଘେରି ଉଚ୍ଚାରିତ ହେଉଥିଲେ ? ଆଜି ସବୁ ସ୍ୱପ୍ନର ଅବସାନ ପରେ ବି ତୁମେ ସେମିତି ଜାଗ୍ରତ ଅଛ। ତୁମ ଓ ମୋ ଭିତରେ ସେଦିନ ଅନେକ ସ୍ୱପ୍ନ ଥିଲେ। ଆମକୁ ଜୋଡୁଥିଲେ, ତଫାତ୍ କରୁଥିଲେ ବି ଯମୁନାର ଦୁଇ କୂଳରେ ଖେଳୁଥିବା ଚପଳ ଲହରୀ ପରି। ମଥୁରା ଓ ଗୋପନଗ୍ର ପରି। ଏବେ ଆମେ ପରସ୍ପରର ସାମ୍ନାସାମ୍ନି। ସ୍ୱପ୍ନ, କଳ୍ପନା, ଆବେଗ – ମଝିରେ ଆଉ କେହି ନାହାନ୍ତି। ଦୋଳା ଖେଳାଇବା, ପହଁରାଇବା ସରିଯାଇଛି। ଏଣିକି ତୁମେ ଆଉ ଲୀଳାବିନୋଦିଆ ନଟବର ପ୍ରେମନାଗର ନୁହଁ। ସ୍ପଷ୍ଟ ଓ ଅନବଗୁଂଠିତ ସ୍ୱୟଂ ପ୍ରେମ। ଏଣିକି ଆଉ କେହି 'ତୁମେ' ବା 'ମୁଁ' ନୁହଁ। 'ତୁମର' ବା 'ମୋର' ସ୍ୱପ୍ନ ନୁହେଁ। ଏଣିକି କେବଳ ଆମେ, ପ୍ରେମ ତା'ର ଏକତାନିକ ନିଃଶ୍ୱାସ। ଆମେ, ଆମର ଭାବାନୁଭବ, ଆମର ଇଚ୍ଛାଭିଳାଷ କେବଳ ସ୍ୱପ୍ନମାତ୍ର ନୁହଁ, ସ୍ୱପ୍ନାତୀତ ମଧ୍ୟ। ସ୍ୱପ୍ନଭଙ୍ଗ ଘଟିନଥିଲେ ଏତେ ବଡ଼ ପ୍ରତ୍ୟକ୍ଷତାକୁ, ରଂଗଭଂଗ ଘଟିନଥିଲେ ଏତେ ସ୍ପଷ୍ଟ ନୀଳାକାଶକୁ ଦେଖିପାରିନଥାନ୍ତି। ସ୍ୱପ୍ନଦେଖା, ସ୍ୱପ୍ନହଜା, ଇଏ ତ ପ୍ରଣୟର ଧାରାରେ ପରସ୍ପରର ସହଚାରୀ ମାତ୍ର। ଆମେ ଯେ ଆଉ ପରସ୍ପର ପାଇଁ ସ୍ୱପ୍ନ ନୁହଁ, ସତ୍ୟ ଭଳି ବାସ୍ତବିକ ହେ ପ୍ରେମ ସୁନ୍ଦର! ତୁମର ସତ୍ୟତାକୁ ବୁଝିବା ପାଇଁ କ'ଣ ଏଇଭଳି ସ୍ୱପ୍ନର ଯମୁନାଟିଏ ପ୍ରୟୋଜନ ହୁଏ ?

ଆଜି ମନେହେଉଛି ସେ ଯମୁନାକୁ ମିଛକରି ସତରେ ତୁମେ ଆସିଛ। ସେଇ ଖୁସିଟା ଯେମିତି ଫୁଲ ହୋଇ ସବୁ ଗଛ ଭରିଦେଇଛି। ତୁମ ମହକରେ ସେମାନେ ପବନକୁ ଗଂଧାକୁଳ କରିରଖିଛନ୍ତି। ତୁମ ହୃଦୟାନୁରାଗକୁ ସେମାନେ ରଂଗକରି ଦେହରେ ମାଖିଛନ୍ତି। ଏତେ ଫୁଲ ହଠାତ୍ କୋଳାହଳ କରି ପହଞ୍ଚିଯାଇଛନ୍ତି ଯେ, କାହା ପାଖରୁ ତୁମ କଥା ଶୁଣିବି ? ସେମାନେ ଅନେକ କଥା କହୁଛନ୍ତି ନା ଗୋଟିଏ କଥାକୁ ଅନେକ ପ୍ରକାରେ କହୁଛନ୍ତି ?

ଏବେ କେମିତି କହିବି ଯେ ତୁମେ କିଛି ଶୁଣିନାହଁ? ପ୍ରତ୍ୟୁତ୍ତର କରିନାହଁ? ଉତ୍ତରମାନେ ଯେମିତି ମତେ ଛାଇଯାଇ ମୋ ପ୍ରଶ୍ନକୁ ଗୋଟିଏ ବିଗତ ବିସ୍ମୟରେ ପୋଛିଦେଲେଣି। ଅଥଚ ତୁମେ ସାମ୍ନାରେ ଉଭା ହୋଇନାହଁ। ପଦଟିଏ ବି ଉଚ୍ଚାରିନାହଁ।

ଆଖିରେ ଗୋଟିଏ ବିହ୍ୱଳ ଦୃଷ୍ଟିପଲକ ଦେଖିଛି କି? ଓଠରେ ମଧୁର ସ୍ମିତଟିଏ ଦେଖିଛି କି ?

ଜାଣେ, ଶବ୍ଦମାନେ ବଡ଼ ଅପାରଗ। ବଡ଼ ଭୟାଳୁ। ତୁମ ପାଖେ ପହଞ୍ଚିବାକୁ ବଡ଼ ସଂକୁଚିତ। ସେମାନଙ୍କର ସବୁ ଆସ୍ପର୍ଧା ମୋ'ରି ପାଖେ। ବେଳାଭୂଇଁରେ ଅଥୟ, ଅସ୍ତବ୍ୟସ୍ତ ହୋଇପଡୁଥିବା ସେଇ ଆକୁଳ ଲହରୀମାନେ କେମିତି ତୁମ ସାମୁଦ୍ରିକ ଛାତି ମଝିରେ ଏମିତି ମୁଣ୍ଡ ପୋତି ଚୁପ୍‌ଚାପ୍ ଶୋଇପଡ଼ନ୍ତି ?

ତୁମ ପ୍ରତ୍ୟୁତ୍ତର ପାଇଁ ଦିନ ଦିନ ଧରି ଅପେକ୍ଷା କରି ପଡ଼ିରହିବା ପରେ ଆଜିର ଏ ଦିନଟାକୁ ହାତରେ ପାଇ ମୁଁ ବଡ଼ ଅସହାୟ ହୋଇପଡ଼ିଛି। ଏହାର

କି ମୂଲ୍ୟ ମୁଁ ଦେବି? ଯାହାକିଛି ମୋର ବୋଲି ଜାଣେ, ସବୁତ ଏହାରି ଅପେକ୍ଷାରେ ରାସ୍ତାରେ ବିଛାଇଦେଇଥିଲି। ଆଜିର ଅନୁଦ୍‌ବେଳ ଛାତିରେ ତୁମର ଏ ନିଷ୍କଂପ ସ୍ପର୍ଶଟିକୁ କେବଳ ଚାପିଧରିବା ଛଡ଼ା ଆଉ କିଛି କରିପାରୁନାହିଁ।

ଆମପାଇଁ ଆଉ କେବେ ବି କିଛି ଶବ୍ଦମୟ ହୋଇପାରିବ ନାହିଁ। ଶବ୍ଦମୟତାର ଅନେକ ସଂଗୀତ ଉପହାର ଦେଇଛି। ଏ ନିଃଶବ୍ଦତାର ଉପଚାର ମଧ୍ୟ ଆଜି ତୁମ ପାଇଁ ସଜାଡ଼ିଦେଲି।

ଆଉ ଲହରୀର ଉଦ୍‌ବେଳନରେ ନୁହେଁ, ମଧ୍ୟ-ଶଯ୍ୟାର ଅତଳ ବାଲିରେ ମୋ ଆବେଗର ସମସ୍ତ ଉଷ୍ମା ଘନୀଭୂତ ହୋଇଯାଇଛି।

ଅଧୀର, ଉଦ୍‌ଗ୍ରୀବ, ବ୍ୟାକୁଳ ସେ ମୁହୂର୍ତ୍ତମାନ କେଉଁ ନିଶ୍ଚିନ୍ତତାର ସ୍ଥିରାସନରେ ଏଭଳି ଯୋଗଯୁକ୍ତ ହୋଇଯାଇଛନ୍ତି?

କେହି ପଚାରିଲେ କହିବାକୁ କିଛି ନାହିଁ। ତୁମ ସତ୍ତ୍ୱେ, ଦେଶକାଳ ପରିପାର୍ଶ୍ୱ ଏବଂ ସର୍ବୋପରି ମୋ ସତ୍ତ୍ୱେ 'ମୁଁ ତୁମର' – ଏ ସହଜ ସ୍ୱୀକୃତିକୁ ଅନ୍ୟଥା କରିବା ମତେ ଜଣାନାହିଁ।

ଆଉ ଅଶ୍ରୁ ନୁହେଁ, ଆବେଗ ନୁହେଁ, ହୃଦୟର ସହଜ ପ୍ରତ୍ୟୟରେ 'ମୁଁ ତୁମକୁ ଭଲପାଏ' ଏଇଟାଇ ମୋର ସବୁ ମୁହୂର୍ତ୍ତର ସଦ୍ୟତମ ଆବିଷ୍କାର। ଏଇ ଅନୁଭବରେ ମୁଁ ପ୍ରତି ମୁହୂର୍ତ୍ତରେ ନୂଆକରି ବଂଚିଉଠେ। ଯେଉଦିନ ଏ ଅନୁଭବକୁ ହରାଇବସିବି, ସେଦିନ ରାଧାର ଯଥାର୍ଥ ମୃତ୍ୟୁହେବ।

ଶ୍ୟାମ! ରାଧା ଥାଉ ବା ନଥାଉ, ରାଧାର ପ୍ରେମ ରହୁ ବା ନରହୁ, ତୁମେ କିନ୍ତୁ ପ୍ରଣୟର ଭାବରୂପରେ ଚିର ମଧୁର ରହିଥାଅ –

ସବୁ ଋତୁର ଅନ୍ତରାଳରେ ଆକାଶର ନୀଳୋଜ୍ଜ୍ୱଳତା ପରି –

ସବୁ ଫୁଲର ରଂଗଭିନ୍ନତାରେ ତା'ର ମନୋହାରିତା ପରି।

□ □ □

୧୯୮୩ – ବ୍ରହ୍ମପୁର

* 'ରାଗବିପ୍ରଲଂଭ' ନାମରେ ୧୯୮୬ 'ଇସ୍ତାହାର' (ଜୁଲାଇ) ପ୍ରକାଶିତ।

# ଦ୍ରୌପଦୀର କାବ୍ୟ

ଲାଂଛନା ଦେବାକୁ ଥାଏ ତ ନିଜ ହାତରେ ନଦେଇ ଅନ୍ୟମାନଙ୍କ ଦ୍ୱାରା ଲାଂଛିତ କରାଅ କାହିଁକି? ମୁଁ ଲାଂଛନାଯୋଗ୍ୟ– ତୁମର ଏ ବିବେଚନାଟିକକ ତ ଯଥେଷ୍ଟ।

କୃଷ୍ଣ-କୃଷ୍ଣା ନାମ ସ୍ୱରୂପରେ ଅଭିନ୍ନ ବୋଲି ସମସ୍ତେ କୁହନ୍ତି। ଭାବ ସଂପର୍କରେ ତୁମେ ମୁଁ ଏକାତ୍ମ ବୋଲି ମୁଁ ଜାଣେ। ତୁମଠାରୁ ଭିନ୍ନ ଭାବି ତୁମେ ମତେ ଏପରି ଲାଂଛିତ କରାଅ, କିଂବା ଅଭିନ୍ନତାର ବୁଝାମଣାରେ ତୁମେ ମୋ'ଠାରୁ ତୁମ ଅଧିକାରର ପରୀକ୍ଷା ନିଅ ?

ବାରଂବାର ଲାଂଛିତ ହୋଇଛି . . .

ସ୍ୱୟଂବର ସଭାରେ ଓ କୁମ୍ଭାରଶାଳରେ . . .

ବିବାହ ବେଦୀରେ ଓ ବାସର ଶେଯରେ . . .

ଲାଂଛିତ ହୋଇଛି କୁରୁରାଜ-ସଭାରେ ସର୍ବ ସମକ୍ଷରେ, ଆଉ ବିରାଟ ରାଜ ଉଦ୍ୟାନର ନିର୍ଜନତାରେ ସବୁରି ଅଗୋଚରରେ।

ଲାଂଛିତ ହୋଇଛି କୌରବଙ୍କ ସ୍ପର୍ଧାରେ ଓ ପାଣ୍ଡବଙ୍କ ଅକ୍ଷମତାରେ . . .

ଦୁନିଆଁର ଲୋଭିଲା ଆଖି, ନିର୍ମମ ବିଚାର ଓ ନିର୍ଦ୍ଦୟ କରପୀଡ଼ନରେ . . .

ଆଉ ଆଜି, ଆକାଶ ଓ ପୃଥିବୀର ଉନ୍ମୁକ୍ତ ଦୃଷ୍ଟିପଟରେ, ନିରୁତ୍ତର ହିମାଦ୍ରି ବକ୍ଷରେ . . .।

କୌରବମାନେ ଲାଂଛିତ କରିଥିଲେ ମୋର ଦେହର ଶୁଚିତାକୁ, ଥରୁଟିଏ। ଆଉ ପାଣ୍ଡବ ପଂଚଭ୍ରାତା! ମୋର ମନ ପ୍ରାଣ, ମୋର ସମଗ୍ର ନାରୀସତ୍ତାର ସୁକୁମାରତାକୁ ଥରକୁ ଥର ଲାଂଛିତ କରିଛନ୍ତି ଭୀଷଣତର ଭାବେ ସେମାନଙ୍କର ନିର୍ବୋଧତାରେ, ନିଷ୍ଠୁରତାରେ, ଉଦାସୀନତାରେ।

ଏବଂ ସବୁ ପରେ ଆଜିର ଏ ଲାଂଛନା . . .

ମୃତ୍ୟୁ ହସ୍ତରେ ପରିତ୍ୟକ୍ତ ଜୀବନର ଦୁଃସହ ଲାଂଛନା . . .।

ଏ ବେଳେ ମୋର ଆଗପଛରେ, ଆଖପାଖରେ, ନିଜ ବା ପର ହୋଇ କେହି ନାହିଁ। ସବୁ ମିଛ ହୋଇଯିବାର ଏ ବିବାକ୍ ବେଳରେ କେବଳ ନିଜେ ହିଁ ନିଜପାଇଁ ଏକମାତ୍ର ସତ୍ୟ ହୋଇଯାଇଛି!

ଏ ବଂଚିବା କିପରି ଓ କାହିଁକି, ପୁଣି କାହା ପାଇଁ, ସବୁ ପ୍ରଶ୍ନ ମିଛ ହୋଇଯିବାର ଏ ମୁହୂର୍ତ୍ତଟାକୁ ଏମିତି ଭେଟିବା ପାଇଁ ବୋଧହୁଏ ଜୀବନର ଏତେ ଲଂବା ପଥଚଲା। ଜନ୍ମାବଧି ବାଟଚଲାକୁ ଏଇ ଗୋଟିଏ ମୁହୂର୍ତ୍ତ ଏମିତି ଶେଷ କରିଦିଏ !

କେବଳ ପଥ-ସଂଗୀତ ଗାନ ପାଇଁ ଏଇ ପ୍ରଲଂବିତ ଜୀବନ? ପଥପାର୍ଶ୍ୱର ଏତେ ବିପୁଳ ଆୟୋଜନ? ପାଂଥଶାଳାର ଏତେ ପରିପୂର୍ଣ୍ଣ ସମାରୋହ? ଅଥଚ୍ ତୀର୍ଥ ମନ୍ଦିରଶୂନ୍ୟ, ତୀର୍ଥଜଳ ବିଶୁଷ୍କ। ଏ ଶୂନ୍ୟତା ହିଁ କ'ଣ ଜୀବନର ସେ ପରମ ଅନ୍ୱେଷିତ ଦେବବିଗ୍ରହ? ପିପାସିତ ଅନ୍ୱେଷାର ଅନ୍ତିମ ଉତ୍ତର ଶୂନ୍ୟଧାର ନଦୀଶଯ୍ୟା !

ଏ ବେଳେ ସେ ପଥ-ସଂଗୀତର ସ୍ମରଣରେ ବା ଆଉ କି ପ୍ରୟୋଜନ?

ଏ ବେଳେ ଆଉ ଫୁଲ ଫୁଟିବ ନାହିଁ। ପକ୍ଷୀ ଗାଇବ ନାହିଁ। ଜହ୍ନ ଆସିବ ନାହିଁ। ବଂଶୀ ବାଜିବ ନାହିଁ। ଏ ବେଳେ ଆଖିରେ ସ୍ୱପ୍ନ ଜମିବ ନାହିଁ କି କଣ୍ଠରେ ଗାନ ଭରିବ ନାହିଁ। ଏ ବେଳେ ଆଲୁଅ ଲିଭିଯିବ, ଆକାଶରୁ ପବନ ଉଭାଇଯିବ।

ଏ ବେଳେ ସୂର୍ଯ୍ୟଚନ୍ଦ୍ର ଲିଭିଯିବେ। ଜନସ୍ଥଳ ସ୍ଥିର ହୋଇଯିବ। ମୋ ଭିତରୁ ସବୁ ପ୍ରଶ୍ନ ଚୁପ୍ ହୋଇଯିବ।

ଏ ମୋର ମରଣ-ଶୋକ ନୁହେଁ, ଜୀବନ-ସଂଗୀତ ବି ନୁହେଁ, ଏଇ ଜନ୍ମର ରହସ୍ୟ-ଜିଜ୍ଞାସା ମାତ୍ର। ତୁମକୁ ଏ ମୋର ଶେଷ ଜିଜ୍ଞାସା।

× × × ×

ହିମାଳୟ ମତେ ଗ୍ରହଣ କରିବାକୁ କୁଣ୍ଠିତ। ଧରା ଧରିରଖିବାକୁ କୁଣ୍ଠିତ। ସ୍ୱର୍ଗ ଆଦରିନେବାକୁ କୁଣ୍ଠିତ।

ମୁଁ ମାଟିର ନା ଆକାଶର, ଏକଥା ମତେ ବୁଝାଇଦେବାକୁ ପାଖରେ କେହି ନାହିଁ। ଅଥଚ୍ ଚିରଦିନ ତ ମୁଁ ମୋର ମାଟି ପୃଥିବୀର ଜୀବନକୁ ଆକାଶ ନିକଟରେ ସମର୍ପିଦେଇଛି।

ଆକାଶରୁ ଆଶ୍ୱାସନା ଖୋଜି ମାଟି ପୃଥିବୀର ଶୋକଯଂତ୍ରଣାକୁ ଭୁଲିବାକୁ ଚେଷ୍ଟା କରିଛି।

ପୃଥିବୀକୁ ଅସ୍ୱୀକାର କରିନାହିଁ। ଏକେ ଏକେ ପୃଥିବୀର ଦାବୀମାନଙ୍କୁ ଯଥାସାଧ ପରିତୃପ୍ତ କରିଛି। ସ୍ତର ସ୍ତର ସତ୍ତାକୁ ଉଦ୍‌ଭିନ୍ନ କରି ଜୀବଧର୍ମ ଯଥାସାଧ ପାଳନ କରିଛି।

ମାତ୍ର ଅପାର୍ଥିବର ଆକାଶୀ ସମ୍ମୋହନକୁ କେବେହେଲେ ବି ବିସ୍ମୃତ ହୋଇପାରିନାହିଁ। ସେ ଅପାର୍ଥିବତା କ'ଣ ଅସ୍ତିତ୍ୱର ନିଜ ଧର୍ମ ନୁହେଁ?

× × × ×

ଧର୍ମ ଅଧର୍ମର ମୁଁ କ'ଣ ବୁଝେ ?

ବାସୁଦେବ, ମୁଁ ତ ତୁମକୁ କେବଳ ମୋର ଧର୍ମ ବୋଲି ଜାଣେ, ପୁଣ୍ୟ ବୋଲି ଜାଣେ, ସୁଖ ଜାଣେ, ଦୁଃଖ ଜାଣେ ।

ତୁମରି ନିର୍ଦ୍ଦେଶରେ ମୁଁ ପଞ୍ଚପତି ଗ୍ରହଣ କଲି । ଅହରହ ପଞ୍ଚଧା ହୋଇ ବି ଚେତନାର ନିର୍ବିଚଳ ସ୍ଥିର ବିନ୍ଦୁରେ ଏକାକୀ ତୁମଠାରେ ମୋର ସମଗ୍ରତାକୁ ମୁଁ ଅଖଣ୍ଡ ଏକ କରି ରଖିଲି । ତାହାହିଁ ମୋର ସ୍ୱଧର୍ମ ଥିଲା ଏବଂ ମୋର ସ୍ୱଧର୍ମ ମୋର ସ୍ତ୍ରୀଧର୍ମଠାରୁ ତ ଭିନ୍ନ ନଥିଲା ।

ମୋର ସ୍ୱ ଯେ ତୁମେ !

ଜାଣ, ସହସ୍ରମୁଖୀ ରାସ୍ତାର ଛକ ମଝିରେ ତୁମେଇ ମୂର୍ତ୍ତି ଧରି ଅହରହ ଉଭାରହିଛ । ମୋର ଗତିପଥ ତୁମକୁ ସ୍ପର୍ଶ ନକରି, ତୁମକୁ ଅତିକ୍ରମ ନକରି କୁଆଡ଼େ ବି ଯାଇପାରିବ ନାହିଁ । ଅଥଚ ତୁମେ ଯେ ଅନତିକ୍ରମ୍ୟ ।

ସବୁ ପଥ ମୋର ତୁମରିଠାରେ ସରିଯାଏ । ଆଉ ଗଂତବ୍ୟ କ'ଣ ?

ସୁଦୂର ତୀର୍ଥସବୁ ଚତୁର୍ଧାମରୁ ଓହ୍ଲାଇଆସନ୍ତି... ଛକ ମଝିରେ ତୁମର ସେ ଆସ୍ଥାନମଂଡ଼ଳକୁ । ମୋର ପିତା ପତି ସଂତାନ ସମାଜ ସବୁ କର୍ତ୍ତବ୍ୟର କେନ୍ଦ୍ରରେ ତୁମେଇ କେବଳ ମୋର ପରିପାଳନୀୟ ଧର୍ମ ହୋଇ ଉଭା ରହିଯାଅ । ତୁମକୁ ଛାଡ଼ି ମୁଁ କୁଆଡ଼େ କାହାପାଖକୁ ବି ଯାଇପାରେନା । ବରଂ ସେମାନେ ତୁମରିଠାରେ ସମାବିଷ୍ଟ ହେଲେହିଁ ସେମାନଙ୍କୁ ସେଇଭଳି ମୁଁ ପ୍ରାପ୍ତ ହୁଏ ।

ମୋର ପ୍ରାଣସ୍ପଂଦନ ରୂପେ ତୁମେ ଯେ ମୋ ଆତ୍ମାରେ ନିତ୍ୟସ୍ପଂଦିତ । ଆତ୍ମାରେ ଅଭିନ୍ନ ବୋଲି ହିଁ କୃଷ୍ଣ-ଅଭିନ୍ନା କୃଷ୍ଣା !

ଆଉ ଆଜି ସେଇଥିପାଇଁ ତ ସେ ପ୍ରାଣସ୍ପନ୍ଦନଟିକ ଏ ଦେହ ଛାଡ଼ି ଚାଲିଯିବା ଆଗରୁ, ହିମାଳୟର ନିର୍ଜ୍ଜନତାରେ ପରିତ୍ୟକ୍ତା ନିଃସଂଗ ଦ୍ରୌପଦୀ ତା'ର ଆତ୍ମାର ଏକକ ସଂଗୀତକୁ ତୁମ ପାଇଁ ତା'ର ଶେଷ ପାଦ-ଅର୍ଘ୍ୟ ରୂପେ କାଢ଼ିଦେଇଛି ।

× × × ×

ମୋର ଜନ୍ମ, ମୋର ପରିଣୟ,
ସ୍ୱୟଂବର ସଭା, କୁରୁ ରାଜସଭା,
ବିରାଟ ରାଜୋଦ୍ୟାନ, ମହାଭାରତ ଆୟୋଜନ,
ଆଉ ଆଜିର ଏ ହିମାନୀ-ଆଲିଂଗନ ।

ଏସବୁ କ'ଣ ଏକେ ଏକେ ତୁମର ଯୋଜନାଭୁକ୍ତ ଥିଲା ?

ଯଜ୍ଞାନଳରୁ ସଂଭୂତ ହୋଇଥିଲି ବୋଲି, ମୋ ଦେହରେ ବହ୍ନିତେଜ, ପ୍ରାଣରେ ହୁତାଶନ, ଆଜୀବନ ତୃଷ୍ଣାନଳରେ ଦଗ୍ଧ ହୋଇଛି । ଅଥଚ ଅଗ୍ନି-ସଂଜାତା ହୋଇନଥିଲେ ମୁଁ ବୋଧହୁଏ ସେ ଧାସରେ ଭସ୍ମ ହୋଇଯାଇଥାନ୍ତି ।

ମୋ ପିତାଙ୍କର ଅଗ୍ନି-କଠୋର ତପସ୍ୟାର ଫଳଶ୍ରୁତି ମୁଁ ସେଇ ତେଜ କ୍ରୋଧ ହିଂସାର ଅଂଶହାରିଣୀ— ତୁମ ଧର୍ମଯଜ୍ଞର ସମିଧ ରୂପେ ସେଇଥିପାଇଁ ବୋଧହୁଏ ଉପଯୁକ୍ତ ବିବେଚିତା ହେଲି।

ଅଥବା, ନିଆଁ ପ୍ରଥମେ ଆପଣାକୁ ହିଁ ଦଗ୍‌ଧ କରିବ। ଆପଣା ଆଧାରକୁ ଭସ୍ମ କରିବ।

ଯଜ୍ଞାଗ୍ନି-ସଂଭୂତା ଯଜ୍ଞସେନ-ଦୁହିତା ଯାଜ୍ଞସେନୀ ଜଗତରେ କେବଳ ନିଆଁ ଜାଳିବ, ନିଜେ ବି ସାରା ଜୀବନ ସେଇ ନିଆଁରେ ଜଳୁଥିବ, (ଆଉ ସେ ଅନଳ-ଦହନ ବେଳେ ତୁମ ସାନ୍ତ୍ୱନାର ଶୀତଳତା ତା'ର ଅପରିହାର୍ଯ ହୋଇଉଠିବ)— ଏହାହିଁ ମୋ ସଂପର୍କରେ ତୁମର ବିଶେଷ ଯୋଜନା ଥିଲା। ସେ ଯୋଜନାରେ ଆର୍ଯାବର୍ତ୍ତର ସୁରକ୍ଷା, ଧର୍ମରାଜ୍ୟର ପ୍ରତିଷ୍ଠା, କୁରୁ-କୁଳର ଭବିଷ୍ୟତ— ଆନୁଷଙ୍ଗିକ ହୋଇଗଲେ।

ସମସ୍ୟା ଗର୍ଭରୁ ଜନ୍ମ ନେଇଥିଲି ବୋଲି ବୋଧହୁଏ ଜୀବନର ସବୁ ଅନୁଷ୍ଠାନ ମୋ ପାଇଁ ସମସ୍ୟାରୂପେ ଆର୍ବିଭୂତ ହେଲେ।

ପିତାଙ୍କର ମାନରକ୍ଷାର ସମସ୍ୟା, ଅହଂକାର ତୁଷ୍ଟିର ସମସ୍ୟା।

ତାଙ୍କର ପ୍ରତିଶୋଧକାମୀ ଉଗ୍ର ତପସ୍ୟା-ଫଳ ରୂପେ ମୋର ଉଗ୍ର ନାରୀତ୍ୱର ଜନ୍ମ। ତାଙ୍କର ଅଗ୍ନି-ବଜ୍ର ଶପଥରୁ ମୁଁ ଦୁର୍ବିନୀତା ଅନଳଜାତା। ତାଙ୍କର ଦୁର୍ଜୟ ଅଭିମାନରୁ ମୁଁ ମହାମାନିନୀ ଦ୍ରୌପଦୀ।

ଆଉ ସେଇ ଅଭିମାନକୁ ବାରବାର ପରାଭବ ଦେଇ ମୋର ସମ୍ମାନକୁ ଆଘାତ-ଲାଂଛିତ କରି ତୁମେ ମୋର ନାରୀତ୍ୱକୁ ଅବମାନନାର ଶେଷ ସ୍ତର ପର୍ଯଂତ ପହଂଚାଇଦେଇଛ।

ତୁମେ କିଂତୁ କ'ଣ ଜାଣିନଥିଲ, ମୋର ମାନାଭିମାନ ତୁମକୁ ଘେରି ଜାଗ୍ରତ ଥିଲା, ତୁମେ ହିଁ ମୋର ମାନ ଥିଲ, ଆତ୍ମାଭିମାନ ଥିଲ। ତୁମରି ମାନରେ ମାନିନୀ ହୋଇ ମୁଁ କର୍ଣ ଦୁର୍ଯୋଧନଙ୍କ ଆସ୍ପର୍ଧା ଓ ଲୋଭାସକ୍ତିକୁ ସ୍ୱୟଂବର ସଭାରେ ଉପହାସ କରିଥିଲି। ତୁମରି ତେଜରେ ତେଜସ୍ୱିନୀ ହୋଇ ମହାଭାରତର ଆୟୋଜନ ମୂଳରେ ସଦର୍ପରେ ଉଭା ହୋଇଥିଲି।

ଏ ସ୍ୱୟଂବରକୁ କେନ୍ଦ୍ରକରି ତ ମୋ ଜୀବନରେ ଲାଂଛନାପର୍ବର୍ ଅୟମାରଂଭ! ଆଉ ତା'ର ଉଦ୍ୟୋକ୍ତା ତୁମେ!

ସେଇ ଦିନରୁ ବାରବାର ତୁମେ ମୋର ଆତ୍ମ ଅଭିମାନକୁ ଆହତ କରିଛ, ଯେପରି ମୋ ଭିତରେ ଯଜ୍ଞାନଳ କୋପମୟ ହୋଇଉଠିବ, ପ୍ରଚଂଡ ହୋଇଉଠିବ। ତାକୁଇ ମହା ଜିଘାଂସାରେ ପରିଣତ କରି ତୁମେ ତୁମର କଳ୍ପିତ ମହାମରଣଯଜ୍ଞର କାଳ-ଉଦ୍‌ବୋଧନରେ ଆର୍ଯାବର୍ତ୍ତକୁ ହତବୀର୍ଯ କରିଦେବ।

ସେଇ ସମାଧାନର ଆଦ୍ୟ ଫଳଶ୍ରୁତି ତ ମୋର ପଞ୍ଚପତି, ଏକେ ଏକେ ବୀରବର ଧନୁର୍ଧର, ସୁପୁରୁଷ, ଯେଉଁମାନଙ୍କ ଶକ୍ତିର ପରିଚୟ ସେ ସ୍ୱୟଂବର ସଭାରେ ମୋ ସମେତ ସମଗ୍ର ଭାରତ ପ୍ରତ୍ୟକ୍ଷ କରି ସ୍ତଂଭୀଭୂତ ହୋଇଯାଇଥିଲା।

ଆର୍ଯ୍ୟାବର୍ତ୍ତର କ୍ଷାତ୍ରଶ୍ରେଷ୍ଠ ରୂପେ ସେମାନେ ମୋର ପାଣିଗ୍ରହଣର ଅଧିକାର ଲାଭ କରିଥିଲେ। (ଅଥଚ ସେମାନଙ୍କର ନିର୍ବୀର୍ଯ୍ୟତାର ପରିଚୟ ମୋ'ଠାରୁ ଆଉ ବେଶି କିଏ ପାଇଛି ?)

ଆଉ ସମଗ୍ର ଆର୍ଯ୍ୟାବର୍ତ୍ତକୁ ଧର୍ମରାଜ୍ୟରେ ପରିଣତ କରିବାର ପରିକଳ୍ପନାରେ ତୁମେ ମତେ ତୁମର ସହକର୍ମିଣୀ– ସଂଗିନୀ ରୂପେ ହିଁ ମନୋନୀତ କରିଥିଲ। ମୁଁ ମଧ୍ୟ ତୁମକୁ ବନ୍ଧୁ ରୂପେ ଲାଭକରି କୃତାର୍ଥ ହୋଇଯାଇଥିଲି।

ତୁମେ ତ ମୋ ଆଖିରେ କେବେବି କେବଳ ଏକ ପୁରୁଷର ବିଶେଷ ପରିଚୟରେ ଉଭା ହୋଇନାହଁ– ଯାହା ମତେ ମୋର ନାରୀତ୍ୱ ସଂପର୍କରେ ସଚେତନ କରି ରଖିଥାନ୍ତା।

ପୁରୁଷ-ଉତ୍ତମ ରୂପେ ମୋ ନାରୀସତ୍ତାକୁ ତୁମେ କେବେ ବି ପ୍ରଲୁବ୍ଧ କରିନାହଁ, ବରଂ ତୁମର ପୌରୁଷ ବଡ଼ ଅସଂଭବ ଭାବରେ ମତେ ମୋର ନାରୀତ୍ୱକୁ ବିସ୍ମୃତ କରାଇଦିଏ।

କୃଷ୍ଣ କୃଷ୍ଣ-ପ୍ରିୟା ନୁହେଁ, କୃଷ୍ଣ-ଆତ୍ମା ବୋଲି ହିଁ କୃଷ୍ଣା।

ଆତ୍ମାର କ'ଣ ଜାତି ଅଛି? ନାରୀ-ପୁରୁଷ ଭେଦ ଅଛି? ମୋ ଆତ୍ମାର ଅବିକଳ ସହଜ-ରୂପ ତୁମର ସେ ଆତ୍ମରୂପ।

କୃଷ୍ଣ-କୃଷ୍ଣାର ରୂପଭିନ୍ନତା ସତ୍ତ୍ୱେ ଆତ୍ମରୂପରେ ମୁଁ ତୁମର ଅବିକଳ ହୋଇଯାଏ। ମୋ'ଠାରୁ ଭିନ୍ନ ମୋର ନାରୀସତ୍ତାର ନେପଥ୍ୟସ୍ଥ ଅସ୍ତିତ୍ୱଠାରୁ ଭିନ୍ନ ଏକ ପୁରୁଷର ପରିଚୟରେ ତୁମକୁ ମୁଁ କେବେ ବି ଦେଖିପାରେ ନାହିଁ।

ସେଇଥିପାଇଁ ତ ତୁମ ସହ ମୋର ଶୃଙ୍ଗାର-ସଂପର୍କର ପରିକଳ୍ପନା ବି କେବେ ମତେ ସ୍ପର୍ଶ କରିନାହିଁ। ଅଥଚ ପ୍ରତି ମୁହୂର୍ତ୍ତରେ କି ଅଦ୍ଭୁତ ଭାବସଂଯୋଗରେ ତୁମେ ମୋ'ପାଖେ ଉପସ୍ଥିତ ରହିଥାଅ।

ଏହାର କି ରୂପ ପରିଚୟ ମୁଁ ବାଢ଼ିବି ?

ଏହାକୁ ତ ମୋର ସମଗ୍ର ଜୀବନ ଭିତରେ, ପଞ୍ଚପତିଙ୍କ ପ୍ରେମ ଅନୁରାଗରେ, କର୍ଣ୍ଣର ଦୂରଭିଳାଷରେ, ଦୁର୍ଯ୍ୟୋଧନର ଲାଳସା-ଲୋଳରେ, ମୋର ପତ୍ନୀତ୍ୱ, ବଧୂତ୍ୱ, ମାତୃତ୍ୱ– କେଉଁ ସ୍ଥିତିରେ କେତେବେଳେ କାହାପାଖରେ ଭେଟିପାରିନାହିଁ।

କର୍ଣ୍ଣର ପୌରୁଷ ମତେ ମୁଗ୍ଧ କରିଛି; ଲୁବ୍ଧ କରିନାହିଁ। ଠିକ୍ ଯେମିତି ପଞ୍ଚପାଣ୍ଡବଂକ ଅଖଣ୍ଡ ପ୍ରୀତି ତୁମ ସହ ମତେ ଆହୁରି ନିବିଡ଼ ସଂପ୍ରୀତି ସୂତ୍ରରେ ବାନ୍ଧିଦେଇଛି ସିନା, ସଂପର୍କ ଛିନ୍ନ କରିନାହିଁ।

× × × ×

ପ୍ରତିଦିନ ହୋମସ୍ନାତା ଦ୍ରୌପଦୀର ଶୁଦ୍ଧ ଦେହ ଏକ ଭର୍ତ୍ତାର ଉପଭୋଗ୍ୟ ହୁଏ। ମାତ୍ର ଯଜ୍ଞଜାତା ଯାଜ୍ଞସେନୀର ଚିରଶୁଦ୍ଧ ତପ୍ତ କାଂଚନ ଆତ୍ମା ଏକମାତ୍ର ତୁମର ଉପଯୋଗ ପାଇଁ ହିଁ ଚିରସମର୍ପିତ ରହିଥାଏ।

ଆତ୍ମାରେ ତୁମ ଭିନ୍ନ ଆଉ କାହାର ଅଧିକାର କେବେ କ'ଣ ରହିପାରେ ?

ସ୍ୱୟଂବର, ସଂସାର, ପ୍ରେମ, ପରିଣୟ – ଏ ସବୁ ଭିତରେ ଆମର ଆତ୍ମସଂପର୍କ ଯେ ଭିନ୍ନ ହୋଇଯିବ, ସେ ଆଶଂକା ମଧ୍ୟ ଦିନେ ମତେ ସ୍ପର୍ଶ କରିନାହିଁ।

ସଂସାରର ଘନଘଟା ତୁମଠାରେ ମୋ ଆତ୍ମାର ନିବିଷ୍ଟତାକୁ କେବେ ବି ବ୍ୟାହତ କରିପାରିନାହିଁ।

ତୁମେ ମୋର କ'ଣ ବା କ'ଣ ନୁହଁ କହିପାରିବି ନାହିଁ। ''ଅତ୍ୟାଗସହନୋବଂଧୁଃ।'' ତୁମଠାରୁ ମୋର ନିମିଷେ ବି ଚେତନାବିଚ୍ଛେଦ ଘଟିନାହିଁ, ଯେଣୁ ତୁମକୁ ବଂଧୁରୂପରେ ହିଁ ଜାଣିଛି।

ମୁଁ ରାଧା ରୁକ୍ମିଣୀଙ୍କ ସହ ତୁମ ସଂବଂଧ ରୂପକୁ ବୁଝେନାହିଁ। ତୁମକୁ ମୋ'ଠାରୁ ବିଚ୍ଛିନ୍ନ କରି ଦ୍ୱୈତଜୀବନର ପ୍ରଣୟ ଗାନ କରିପାରିନାହିଁ। ମିଳନ ବିରହର ଚିତ୍ର କଳ୍ପନା ଆଙ୍କିପାରିନାହିଁ। ମୋର ବକ୍ଷସ୍ପଂଦନରେ କେବଳ ତୁମରି ନାମଗାନ ଶୁଣିଛି। ମୋର ଜୀବନାନୁରାଗରେ ତୁମକୁ ସୁରଂଜିତ ଦେଖିଛି। ଅତଂର-ବାହାର ସର୍ବତ୍ର ତୁମର ସ୍ନିଗ୍ଧ ଆଖିର ନୀଳମୟତାକୁ ପ୍ରସାରିତ ଦେଖିଛି। ମାଟିରୁ ଆକାଶଯାଏ ଆଖି ପହଁରାଇ ସବୁଠି ତୁମର ମଧୁରତାକୁ ଫୁଲମୟ ହୋଇଯିବା ଦେଖିଛି। କେବେ ବି, କେଉଁଠାରେ ବି ମନେହୋଇନାହିଁ ଯେ ତୁମେ ନାହଁ।

ଏବଂ ଦୁର୍ଭାଗ୍ୟର ଘନାଂଧକାର ବଳୟ ଭିତରେ ଅଂଧ ହୋଇଯାଉଥିବା ବେଳେ ବି ମୋ ଆଖି ଭିତରୁ ତୁମର ନୀଳୋଜ୍ଜ୍ୱଳ ମନୋହାରିତାକୁ କାଢ଼ି ପୋପାଡ଼ିପାରିନାହିଁ। ଲାଂଛନାର ଦୁଃସହ ଯଂତ୍ରଣାର୍ତ୍ତ ମୁହୂର୍ତ୍ତରେ ବି ତୁମର ଅଭୟ ସ୍ମିତର ଆଶ୍ୱାସନାକୁ ହୃଦୟ ଭୁଲିପାରିନାହିଁ।

ତୁମେ ତ ସେଇ ବଂଧୁ, ଘୋର ଅନ୍ଧାର ରାତିରେ ମୁଁ ଦିଗ ବାରି ନପାରି ଆତଂକରେ ଠିଆ ହୋଇଗଲେ ଯିଏ ପଛରୁ ନିଶବ୍ଦରେ ଆସି ଆଶ୍ୱାସନାର ସ୍ପର୍ଶ ଛୁଆଁଇଦିଏ – 'ଭୟ ନାହିଁ– ମୁଁ ଅଛି।'

ତୁମେ ସୁହୃଦ୍‌ତମ, ସେଇଥିପାଇଁ ସିନା ଧରଣୀଭାର ସତ୍ତ୍ୱେ, ଜଗତ ଜଂଜାଳ ସତ୍ତ୍ୱେ, ମୋ ପାଇଁ ଟିକେ ସମୟ, ଟିକେ ହୃଦୟ ତୁମ ପାଖେ ଅଭାବ ହୁଏ ନାହିଁ।

ଆଉ ସେଇଥିପାଇଁ, ପ୍ରତି ମୁହୂର୍ତ୍ତରେ ପଂଚଧା ହେବାର ବେଦନା ଭିତରେ ନିଜକୁ ପୁଣି ତୁମରିଠାରେ କିଭଳି ଏକାଗ୍ର, କିଭଳି ଏକ ନୀରବ ନିଶ୍ଚଳତାରେ ସମଗ୍ର ସମାହିତ କରିପାରିବି, ସେଇ ଏକମାତ୍ର ସାଧନାକୁ ମୁଁ ଜୀବନରୂପେ ବରିନେଇଚି। ପଞ୍ଚପତିଙ୍କ ଠାରେ ପିତା, ଭ୍ରାତା, ଭର୍ତ୍ତା, ଦେବର ଓ ପୁତ୍ରର ମିଶାମିଶି ପରିଚୟକୁ ଭେଟିବା ଭିତରେ ପଞ୍ଚବଳୟ ଭେଦକରି ସବୁ ସଂପର୍କର ନାମାତଂର ଓ ରୂପାତଂର ତୁମକୁ ପୁଣି ସବୁ ସଂବଂଧର ଦେହଳୀ ବାହାରେ ଆବିଷ୍କାର କରିଛି। ସେଠି ନିଜ ରୂପରେ ତୁମେ, କେବଳ ତୁମେ ଏବଂ ମୋ'ଠାରୁ ଅଭିନ୍ନ ଓ ଅବିଚ୍ଛିନ୍ନ ମୋ ସ୍ଥିତି, ସୁପ୍ତି, ଜାଗ୍ରୁତିର ଅଂତରାଳରେ ସ୍ପନ୍ଦନଘନ ପରମ ଅସ୍ତିତ୍ୱ ତୁମେ।

ପଞ୍ଚକୋଷୀ ସତ୍ତାର ପଞ୍ଚ ଚେତନାବଳୟ ସହ ନିତ୍ୟ ସଂପୃକ୍ତି ସତ୍ତ୍ୱେ ଅଭ୍ୟଂତରରେ ଆତ୍ମାର ସହଜ ଆତ୍ମବିଳାସ ଭଳି ତୁମ ସହ ମୋର ସେ ଏକାକୀ ଓ ଏକାନ୍ତ ଭାବନିବାସ ।

ଦେହରେ ଦ୍ରୌପଦୀ ଓ ନାମରେ କୃଷ୍ଣା– ଏତିକି ସଂବଳ କରି ମୁଁ ବଂଚିବାର ସାଧନା କରିବା ଭିତରେ କୃଷ୍ଣନାମକୁ ହିଁ ଇଷ୍ଟ କରିଛି। ଦେହ, ମନ, ପ୍ରାଣ, ହୃଦୟ, ଆତ୍ମା– ସବୁକୁ ଏକ କରି ଏକ ହେବାରେ ପତ୍ନୀତ୍ୱର ସାଧନା ପରଂପରାରେ ଲାଳିତ ମୋର ନାରୀତ୍ୱକୁ ବିଡ଼ଂବିତ ଭାଗ୍ୟର ଇସାରାରେ ପ୍ରତ୍ୟହ ପଞ୍ଚଭାଗ କରିବାରେ ଏକାଗ୍ର ହେବାକୁ ପଡ଼େ, ପ୍ରତିଦିନ ନୂଆ ମଂତ୍ର ବୋଲିବାକୁ ପଡ଼େ। ନିଜକୁ ଖଣ୍ଡ ଖଣ୍ଡ କରି ଭାଂଗିଦେବାର ଅହରହ ଚେତନାସଂଘର୍ଷ ଭିତରେ ମୁଁ କିପରି 'ଏକସତ୍ତା'ର ପରିଚୟରେ ତଥାପି ତିଷ୍ଠି ରହିଛି, ମୋର ଶତଧା ବିଦୀର୍ଣ୍ଣ ଦେହ ମନ ପ୍ରାଣ ସତ୍ତ୍ୱେ ଆତ୍ମାର ଏକାଗ୍ରତାରେ କିପରି ଅଖଣ୍ଡ ହୋଇ ରହିଛି, କେଉଁ ଗୋଟାଏ ଅଦୃଶ୍ୟ ଶକ୍ତିର ଉନ୍ମୁଖତା ମୋର ସହସ୍ରଖଣ୍ଡର ସାଧନା ସହ ମତେ ଏକ କରି ସଂଯୁକ୍ତ ରଖିଛି। ତୁମକୁ ସଖାରୂପେ ଲାଭକରି ନଥିଲେ ବୋଧହୁଏ ମୁଁ ଜାଣିପାରି ନଥାନ୍ତି। ତୁମ ସୁହୃଦ୍ ବୋଲି ପାଣ୍ଡବଙ୍କୁ ଜାଣିନଥିଲେ ପଞ୍ଚପତିଙ୍କୁ ସହଜରେ ଗ୍ରହଣ କରିନେଇ ପାରିନଥାନ୍ତି। ଆପଣା ପତ୍ନୀତ୍ୱର ମର୍ଯ୍ୟାଦାକୁ ଠିକ୍ ଦେଇପାରିନଥାନ୍ତି।

ସଂସାର ଓ ସ୍ୱଧର୍ମ, ସତୀଧର୍ମ ଓ ନାରୀଧର୍ମର ଦ୍ୱନ୍ଦ୍ୱକୁ ମନ୍ତ୍ର-ଶ୍ଳୋକ କରି ମୋର ବିବାହର ଯଜ୍ଞବେଦୀରେ ଯେ ଦାଂପତ୍ୟର ଅନିର୍ବାଣ ଅଗ୍ନି-ଅଭିଷେକ ସଂପନ୍ନ ହୋଇଥିଲା, ତାହାର ଏକମାତ୍ର ହୋମାର୍ଚ୍ଚିତ ଘୃତ-ମୃତ୍ତିକା ଥିଲ ତୁମେ। ସତୀତ୍ୱର ପ୍ରଶ୍ନ ତ ନିଜ ପାଖେ। ସତୀତ୍ୱର ବିଚାର ସତ୍ତାକୁ ନେଇ। ସତ୍ତାର ସାମଗ୍ରିକ ବିଶ୍ୱାସ, ପ୍ରେମକୁ ଏକାଗ୍ର କରି ସମର୍ପିଦେବା, ପୁଣି ପରିପୂର୍ଣ୍ଣ ଭାବେ ସତ୍ତାର ସମଗ୍ରତାରେ ଗ୍ରହଣ କରିନେବା, ଏ ତପସ୍ୟାକୁ ତ ମୁଁ ଜୀବନର ତପସ୍ୟାରେ ରୂପାଂତରିତ କରିଦେଇଛି। ସେ ତପସ୍ୟାରେ ପାଣ୍ଡବ ପଂଚଭ୍ରାତାଙ୍କୁ ଫୁଲର ପାଞ୍ଚ ପାଖୁଡ଼ା ଭଳି, ଯଜ୍ଞର ପଂଚଅଗ୍ନି ଭଳି ବରଣ କରିନେଇଛି। ମୋ ନିଜକୁ ସେଠାରେ ସମିଧ କରି ଜାଳିଦେବାର ମୁହୂର୍ତ୍ତରେ ତୁମକୁ ମୋର ସହାୟକ-ଶକ୍ତି ରୂପେ ଲାଭ କରିଛି। ମୋର ସେ ଅନଳ-ପରୀକ୍ଷାର ମର୍ମଦାହୀ ରୂପରେ କେତେ ବିରୋଧାଭାସ ! ଏକ ଓ ଅନେକ, ସମଗ୍ର ଓ ସ୍ୱତଂତ୍ର; ସେମାନେ ପ୍ରତ୍ୟେକେ ପ୍ରତି ମୁହୂର୍ତ୍ତରେ ସ୍ୱତଂତ୍ର ପୁଣି ଅନ୍ୟମାନଙ୍କ ସହ ସଂଯୁକ୍ତ, ଏକକ ଅନନ୍ୟ, ପୁଣି ଏକତ୍ର ଓ ଅଭିନ୍ନ। ଯୁଧିଷ୍ଠିର ପାଣ୍ଡବଜ୍ୟେଷ୍ଠ, ଏକଥା ଯେମିତି ଭୁଲିବାର ନୁହେଁ, ଯୁଧିଷ୍ଠିରଙ୍କ ମହତ୍ତ୍ୱ ଯୁଧିଷ୍ଠିରଙ୍କ ଏକକ ବ୍ୟକ୍ତିତ୍ୱ, ତା ମଧ୍ୟ ସ୍ମରଣଯୋଗ୍ୟ। ମତେ ଭୁଲିଯିବାକୁ ହୁଏ ଯେ କିଏ ଯେ ପାଣ୍ଡବଶ୍ରେଷ୍ଠ। ପ୍ରତ୍ୟେକଙ୍କୁ ସ୍ୱତଂତ୍ର ଭାବେ ନାରୀ ହୃଦୟର ସ୍ୱୀକୃତି ଭିତରେ ପୂର୍ଣ୍ଣାଂଗ ପୁରୁଷ ରଚନା କରିବାକୁ ହୁଏ, ପରିତୃପ୍ତ କରିବାକୁ ହୁଏ, ପୁଣି ପଂଚଖିଅର ସଂଯୋଗ-ସୂତ୍ରଟିକୁ ବି ଧରିରଖିବାକୁ ହୁଏ। ଏ ବିରୋଧାଭାସକୁ ନେଇ

ଯେଉଁ ଦାଂପତ୍ୟର ସାଧନା, ତାହା ଦ୍ରୌପଦୀର ବିଡ଼ଂବିତ ଭାଗ୍ୟ ନାଁ ପ୍ରକୃତିର ନାରୀସତ୍ତା ଭାବରେ ଆପଣାର ଶକ୍ତି-କଳନା ପ୍ରୟାସ– ହେ ଯଜ୍ଞେଶ୍ୱର, ତାହା ତୁମେ ଜାଣ। ସବୁ ବିରୋଧଭାବନାର ସମାଧାନ ବିନ୍ଦୁରେ ତୁମକୁ ଠିଆ କରେଇ ମୁଁ କେବଳ ତୁମରି ଏକମୁଖୀ ଲକ୍ଷ୍ୟରେ ବହୁଧା ବିଭକ୍ତ ଏ ଜୀବନଧାରାକୁ ଲୟଯୁକ୍ତ ରଖିବାର ସାଧନା କରିଛି। ପଞ୍ଚପତି ଏକପତିର ରହସ୍ୟ ସମାଧାନ ତ ତୁମରି ପଞ୍ଚ କରାଂଗୁଳି– ସପ୍ତଛିଦ୍ରକୁ ସ୍ପର୍ଶ କରି ଯେ ଗୋଟିଏ ବଂଶୀ ତାନ ଶୁଣାଇଥାଏ। ମୋହନ ବେଣୁରୁ ସୁଦର୍ଶନ ଚକ୍ର, ମଧୁର ସୃଷ୍ଟିଛନ୍ଦଠାରୁ ପ୍ରଳୟର ଉତ୍ତାଳ-ଘୂର୍ଣନ, ସେ କରାଂଗୁଳି ବାହାରେ ଆଉ କେଉଁ ରହସ୍ୟ-ଜଗତର ସଂଧାନ ?

(୨)

ସଖା, ତୁମକୁ ପାଖେ ପାଖେ ପାଇଥିଲି ବୋଲି, ତୁମଠାରୁ ନିଜକୁ ଅଭିନ୍ନ ଅନୁଭବ କରିଥିଲି ବୋଲି ତ ତୁମର ସବୁ ଭବିଷ୍ୟତ ଯୋଜନାରେ ତୁମେ ଯେଉଁପରି ଚାହିଁଲ ମୁଁ ସେହିପରି ହୋଇ ତୁମ ହାତରେ ନିଜକୁ ସମର୍ପିଦେଲି। ସ୍ୱୟଂବର ପାଇଁ ପ୍ରସ୍ତୁତ ହେଲି।

ସେ ସ୍ୱୟଂବର ସମଗ୍ର ଆର୍ଯାବର୍ତ୍ତର ଭବିଷ୍ୟତ ଭାଗ୍ୟଡେରି ନିୟଂତ୍ରିତ କରିଥିଲା କୁଆଡ଼େ।

ଆଉ ମୋର ଭବିଷ୍ୟତ ?

ସେ ଭବିଷ୍ୟତକୁ ତୁମେ ହିଁ ଭାଗ୍ୟ ହୋଇ ନିର୍ଣୟ କରିଦେଲ।

ମୋର ଭବିଷ୍ୟତ ପାଇଁ ମୁଁ ଉଦ୍‌ବିଗ୍ନ ନଥିଲି। ଭାରତର ଭବିଷ୍ୟତ, ତୁମ ଧର୍ମରାଜ୍ୟ ପ୍ରତିଷ୍ଠାର ଭବିଷ୍ୟତ, କିଛି ବି ସହ ସଂପୃକ୍ତ ନଥିଲି। ମୋର ସମଗ୍ର ଭବିଷ୍ୟତକୁ ଘେରି ସମ୍ମୁଖରେ କେବଳ ତୁମେ ଉଭା ଥିଲ। ତୁମରି ହାତରେ ମୋର ଅଦୃଶ୍ୟ ଭବିଷ୍ୟତକୁ ମୁଁ ମଧ୍ୟ ଅଂଧ ଭଳି ସମର୍ପିଦେଇଥିଲି।

କେଶବ ! ତୁମେ ମୋର ଭାଇ ବଂଧୁ, ଆତ୍ମୀୟସ୍ୱଜନ, ଜ୍ଞାତି ପରିଜନ– କିଛି ନଥିଲ। ତଥାପି କାହିଁକି ତୁମ ଖିଆଲର ଦୁର୍ବୋଧ ହାତକୁ ମୁଁ ମୋ ଭାଗ୍ୟଡୋରିଟି ନିଜେ ନିଜେ ଏପରି ଅବୋଧ ଭାବେ ବଢ଼ାଇଦେଲି ?

– କ'ଣ ତୁମକୁ ସବୁ ମଣିଥିଲି ବୋଲି ?

– ଆଉ ତାହା ତୁମେ ଜାଣିଥିଲ ବୋଲି ?

ବଂଧୁତ୍ୱର ହସ୍ତ ପ୍ରସାରି ଅନ୍ୟ ସବୁ ହାତର ବଂଧନ ତୁମେ ଶିଥିଳ କରିଦେଲ, କିଂବା ସେମାନେ ଶିଥିଳ; ପ୍ରମାଣ କରିଦେଲ ? ଶିଥିଳ ହୋଇନଥିଲେ ମୁଁ ପଞ୍ଚଶଯ୍ୟାର ନାୟିକା ହୋଇନଥାନ୍ତି, ଦ୍ୟୁତକ୍ରୀଡ଼ାରେ ବିବସ୍ତ୍ର ହୋଇନଥାନ୍ତି। ସତ୍ତା କ'ଣ ପଣ୍ୟ ?

ସ୍ୱୟଂବର ସଭାରେ ଦ୍ୱନ୍ଦ୍ୱ! ନାରୀ ପଣ୍ୟ, ବିଜେତାର ଅଧିକାର ଭୋଗ୍ୟା। ଏହା ମୋର ନାରୀ-ଜୀବନର ପ୍ରଥମ ଲାଂଛନା ଥିଲା। କର୍ଣ୍ଣ ମତେ ଜୟ କରି ଦୁର୍ଯୋଧନଙ୍କୁ ଅର୍ପଣ କରିଦେବା ଉଦ୍ଦେଶ୍ୟରେ ଧନୁଚାଳନା କରିବାକୁ ଉଦ୍ୟତ ହେଲାବେଳେ ମୁଁ ସେଇଥିପାଇଁ କ୍ଷିପ୍ତ ହୋଇଉଠିଥିଲି। ସେ ମତେ ରମଣୀ ନୁହେଁ, କେବଳ ରମଣ-ବିଳାସିନୀ ରୂପେ ବିଚାର କରିଥିଲା। ପଣ୍ୟବସ୍ତୁ ବିଚାରିଥିଲା। ମୋର ନାରୀତ୍ୱର ବୈଭବକୁ ସେ କି ମୂଲ୍ୟ ଦେଇଥାନ୍ତା ?

କୁରୁକୁଳ ମୋର ଜାତଶତ୍ରୁ; କିଂତୁ କର୍ଣ୍ଣ ମୋର ପ୍ରଥମ ଲାଂଛନାକାରୀ ମର୍ମଶତ୍ରୁ ରୂପେ ଆର୍ବିଭୂତ ହେଲା। ପାଂଚାଳ ସ୍ୱୟଂବର ସଭାଠାରୁ କୁରୁକ୍ଷେତ୍ର ପର୍ଯଂତ କୌରବ ନୁହନ୍ତି, ପାଣ୍ଡବ ନୁହନ୍ତି, ସେମାନଙ୍କୁ ଉପଲକ୍ଷ୍ୟ କରି ମୋର ନାରୀତ୍ୱର ମର୍ଯାଦାକୁ ଭୂଲୁଣ୍ଠିତ କରିବାରେ କର୍ଣ୍ଣର ପୌରୁଷ ନିଜ ସାର୍ଥକତା ଖୋଜିଥିଲା।

ଆଉ ମୋର ପଞ୍ଚପତି, ଏକେ ଏକେ ବୀରବର ଧନୁର୍ଧର। ଯାହାଙ୍କ ଶକ୍ତିର ପରିଚୟ ସେଇ ସ୍ୱୟଂବର ସଭାରେ ହିଁ ମୋ ସମେତ ସମଗ୍ର ଆର୍ଯାବର୍ତ୍ତ ପ୍ରତ୍ୟକ୍ଷ କରି ବିସ୍ମିତ ହୋଇଯାଇଥିଲା, ଯେଉଁଠାରେ ସେମାନେ ଆର୍ଯାବର୍ତ୍ତର କ୍ଷାତ୍ରଶ୍ରେଷ୍ଠ ସୁପୁରୁଷ ରୂପେ ମୋର ପାଣିଗ୍ରହଣର ଅଧିକାର ଲାଭକରିଥିଲେ !

ଅଥଚ଼ ସେମାନଙ୍କର ସବୁ ଶକ୍ତି, ଏକମାତ୍ର ଶକ୍ତି ଯେ ତୁମେ, ସେକଥା ସେମାନେ, ତୁମେ ବା ମୁଁ– କିଏ ନ ଜାଣେ ?

ବିବାହ ଲଗ୍ନରେ ହିଁ ମୋର ଜାଣିବାର ଦୁର୍ଭାଗ୍ୟ ହୋଇଥିଲା, ଆଗକୁ ଲଂବିଆସୁଥିବା ସେଇ ଉତ୍ସୁକ ହାତମାନଙ୍କର ଭାର ବହନର ଶପଥ କେତେ ବଡ଼ ପ୍ରହସନ।

ବୈବାହିକ ଜୀବନକୁ ପ୍ରବେଶ କରି, ସଂବଂଧର ଜଗତକୁ ସ୍ୱୀକାର କରିନେବା ମୁହୂର୍ତ୍ତରେ ହିଁ ବୁଝିଥିଲି ଇଏ ଏକ ଗଂଧର୍ବପୁରୀ, ଆଉ ନିଃସଂପର୍କତାର ଶୂନ୍ୟ ଗହ୍ୱର ଅଭିମୁଖେ ଏ ମୋର ପ୍ରଥମ ପଦକ୍ଷେପ।

ଧର୍ମ ସଂସ୍ଥାପନା ପାଇଁ, ନ୍ୟାୟ ପ୍ରତିଷ୍ଠା ପାଇଁ, ପାଣ୍ଡବ ଶକ୍ତିକୁ ଅଭେଦ୍ୟ ନିୟୋଜିତ ରଖିବା ପାଇଁ ତୁମ ଆଗରେ ମାତ୍ର ଏଇ ଗୋଟିଏ ପଥ ନିର୍ଦ୍ଦିଷ୍ଟ ଥିଲା ? ଲୋକ-ଚରିତ୍ର-ବିଦ୍ୟାର ଅଭୁତ ଆବିଷ୍କାର ଥିଲା ଯେ ପଞ୍ଚଭ୍ରାତା ଏକତ୍ର, ଏକୋଲକ୍ଷ୍ୟ ହୋଇ ରହିବାପାଇଁ ଏକପତ୍ନୀକ, ସମପତ୍ନୀକ ହେବା ଆବଶ୍ୟକ। ସେମାନଙ୍କ ପାରିବାରିକ ସୌହାର୍ଦ୍ଦ୍ୟ ରକ୍ଷା ଓ ତୁମର ଧର୍ମରାଜ୍ୟ ପ୍ରତିଷ୍ଠା ପାଇଁ ମତେ ଏଇଭଳି ଏକ ଅଂଧ-ନ୍ୟାୟର ଯୂପକାଠରେ ଆତ୍ମବଳି ଦେବାକୁ ପଡ଼ିଲା। ଏକ ଦେହ ନେଇ ପଞ୍ଚପୁରୁଷଙ୍କ ପାଖରେ ପଂଚ଼ମନ, ପଂଚ଼ପ୍ରାଣ ରୂପେ ଅଭିସାରିକା ସାଜିବାରେ ନାରୀତ୍ୱର ଯେ ଲାଂଛନା, କେଉଁ ପୁରୁଷ କେବେ ବି ବୁଝିପାରିବନାହିଁ। ଅଥଚ଼, ସେମାନେ ପ୍ରତ୍ୟେକେ ନିଜ ପାଇଁ ସ୍ୱତନ୍ତ୍ର କରି ଭିନ୍ନ ପତ୍ନୀ ଗ୍ରହଣ କରିବାବେଳେ, ସ୍ୱତଂତ୍ର ଦାଂପତ୍ୟ ରଚ଼ନା କରିବାବେଳେ, ସେମାନଙ୍କ ଘର ତ ଭାଙ୍ଗିଲା ନାହିଁ। ପତ୍ନୀ ହେତୁକ ବିବାଦ ଲାଗିଲାନାହିଁ। ତୁମ ଧର୍ମ ଭୁଷୁଡ଼ିପଡ଼ିଲାନାହିଁ।

ସମସ୍ତଙ୍କର ହେବାକୁ ଯାଇ ମୁଁ କିଂତୁ କାହାରି ହେଲିନାହିଁ।
ନା ଦ୍ୟୁତ-କ୍ରୀଡ଼ା ବେଳେ କୁରୁସଭାରେ –
ନାଁ ମୃତ୍ୟୁ-ଲୀଳା ବେଳେ ପଥପ୍ରାଂତରେ –

କାହାରି ଜଣକର ବିବାହିତା ପତ୍ନୀ ହୋଇଥିଲେ ମୋର ଏଇଭଳି ଅମର୍ଯାଦା ଅପମାନର ଦୁର୍ଭାଗ୍ୟକୁ ସେ ଏମିତି ମାନିନେଇଥାନ୍ତେ ?

ତୁମେ କ'ଣ ଠିକ୍ ସେୟା ଚାହିଁଥିଲ ? ତୁମେ ମତେ ଏତେ ବଡ଼ ଧରଣୀରେ ଏମିତି ଅରକ୍ଷଣୀୟା, ଅସହାୟା ବୋଲି ପ୍ରମାଣ କରିଦେଲ, ତୁମକୁ ହିଁ ଏକମାତ୍ର ସୁରକ୍ଷାର ଆଶ୍ରୟ ବୋଲି ଜାଣିବା ପାଇଁ ? ସବୁ ପ୍ରହସନର ହାତ ତେଣୁ ତଳକୁ ଖସିଗଲା । କେବଳ ତୁମରି ବଂଧୁତ୍ୱର ହାତ ମୋର ମାନରକ୍ଷା ପାଇଁ ଉର୍ଦ୍ଧ୍ୱରୁ ଲଂବିଆସିଲା ।

ମୁଁ ଭରତ-କୁଳର ପୌରୁଷକୁ ଧିକ୍କାର କରୁନାହିଁ, କେବଳ ଆତ୍ମ-ଧିକ୍କାର କରୁଛି । ନିଜର ନାରୀତ୍ୱକୁ ଧିକ୍କାର କରୁଛି, ବିଶ୍ୱାସର ହାତ ବଢ଼ାଇ ଯେ ପୁରୁଷର ସମର୍ଥ ହସ୍ତରେ ନିଜର ସୁରକ୍ଷାର ଭାଗ୍ୟଡ଼ୋରିକୁ ସମର୍ପିଦେଇ ସବୁଦିନ ପାଇଁ ଅରକ୍ଷଣୀୟା ହୋଇଯାଏ ।

(୩)

କୁରୁସଭାର ଲାଂଛନାକୁ ମୁଁ କିପରି ଭୁଲିବି ?

ନାରୀଜନ୍ମ ପାଇ, ନାରୀଦେହ ଧରି, ପୁଣି ବିବାହିତା ପତ୍ନୀ ହୋଇ କିଏ କେବେ ତାହା ଭୁଲିପାରେ ? ପଞ୍ଚପାଣ୍ଡବ ଭୁଲିଯାଇପାରନ୍ତି । ପାଣ୍ଡବସଖା ଦ୍ୱାରକାଧିପତି ଯାଦବଶ୍ରେଷ୍ଠ ଶ୍ରୀକୃଷ୍ଣ ଭୁଲିଯାଇପାରନ୍ତି । ମାତ୍ର ଅଭାଗିନୀ କୃଷ୍ଣାର ହୃଦ-ଦୋସର ଅଂତର୍ଯାମୀ କୃଷ୍ଣ କ'ଣ ଭୁଲିଯାଇପାରିବେ ?

ସେ ଯଂତ୍ରଣାକୁ ତୁମେ ମୋ ସାଙ୍ଗରେ ଭୋଗିଛ, ମୋ ଭିତରେ ରହି ଭୋଗିଛ । ଆଉ ତାହାହିଁ ପ୍ରବଳଭାବେ ତୁମ ସଂପର୍କରେ, ତୁମ ବଂଧୁତ୍ୱ ସଂପର୍କରେ, ତୁମ ସଂପ୍ରୀତି ସଂପର୍କରେ ମତେ ପୂର୍ଣ-ସଚେତ କରାଇଦେଇଛି ।

ପୃଥିବୀର ଶୂନ୍ୟତାକୁ ପୂର୍ଣ-ଉଦ୍‌ଘାଟିତ କରିଦେଇ ତୁମ ପରିପୂର୍ଣ ହସ୍ତତଳେ ମତେ ଶୂନ୍ୟ ହାତରେ ଠିଆକରାଇଦେଲା ।

ସେଦିନ ତ ମୋର ଭିତର ବାହାର ସବୁ ଶୂନ୍ୟ ହୋଇଯାଇଥିଲା ।
ରାଜବଧୂ-ରାଜରାଣୀର ସ୍ୱର୍ଧିତ ବସ୍ତ୍ରାବରଣ ଖସିପଡ଼ିଲା ।
ବଧୂତ୍ୱ, ପତ୍ନୀତ୍ୱର ସବୁ ଦର୍ପିତ ଅହଂକାର-ଆଭରଣ ତଳେ ଲୋଟିପଡ଼ିଲେ ।
ସ୍ନେହ ପ୍ରେମ ଅନୁରାଗର ସୁସଜ୍ଜିତ ଉତ୍ତରୀୟମାନ ଲୁଣ୍ଠିତ ହୋଇଗଲେ ।

ରାଜପଣର ଅହଂକାର ଆସ୍ଫାଳନ, ବଧୂପଣର ମର୍ଯାଦା ସଂଭ୍ରମ, ପତ୍ନୀତ୍ୱର ଗୌରବ ଅଭିମାନ ଲାଂଛନାର କ୍ଷୁରଧାରରେ ବିଡ଼ଂବିତ ହୋଇଗଲେ।

ଗୋଟି ଗୋଟି ହୋଇ ପରିଧେୟମାନ ମୋର ଅଙ୍ଗଚ୍ୟୁତ ହେଉଥିବାବେଳେ ଦେଖୁଥିଲି ଯେ ମୁଁ ଆଉ କାହାରି କିଛି ନୁହେଁ। ରାଜମର୍ଯାଦା ରାଜରାଣୀକୁ ସୁରକ୍ଷା ଦେଇପାରିଲା ନାହିଁ। କୌଳିକତା କୁଳବଧୂର ସମ୍ମାନ ଜଗିପାରିଲା ନାହିଁ। ଦାଂପତ୍ୟ ପତ୍ନୀର ଗୌରବକୁ ନିଜ ପ୍ରେମ ଭିତରେ ନିରାପଦ ରଖିପାରିଲା ନାହିଁ। ଜୀବନର ସକଳ ସଂବଂଧ ରୂପ ସେ କୁରୁସଭାଗୃହରେ କେବଳ ଗୋଟିଏ ଗୋଟିଏ ଅଂଗାବରଣ ହୋଇ ନିର୍ଲଜ୍ଜ ଭାବେ ଖସିପଡୁଥିଲେ।

ଅଂଧାରର ସେଇ ନିଘଂଚ ବେଳାରେ ସବୁ ଆଲୁଅ ଯେ ମିଛ ହୋଇଗଲେ। ସବୁ ପରିଚୟର ପୋଷାକମାନ ଖସିପଡୁଥିଲାବେଳେ ସବୁ ସଂବଂଧର ଡୋରିମାନ ଟିକିଟିକି ହୋଇ ଛିଡ଼ିଯାଉଥିଲେ। (ଅଥବା ସେମାନେ ସତରେ କେବେ ବାଂଧିନଥିଲେ, କେବଳ ଏକ ବଂଧନର ଭ୍ରମ ସୃଷ୍ଟି କରିଥିଲେ।) ଦ୍ରୌପଦୀର ଆଖପାଖରେ କେବଳ ଏକ ନିରାଲଂବ ନାସ୍ତିବାଚ୍‌କତା। ସାରା ଭାରତର ଶ୍ରେଷ୍ଠ ବୀରମାନେ ସେଦିନ ଏକ ଏକ ପ୍ରହେଳିକା ହୋଇଗଲେ। ସତ୍ୟ ଧର୍ମ ନ୍ୟାୟ ଆଦି ଶବ୍ଦମାନେ ଯେ କୁରୁ ଦରବାରରେ ରୂପ ପରିଗ୍ରହ କରି ବିରାଜିଥାନ୍ତି, ଭରା ଦ୍ୱିପ୍ରହରର ସେଇ ଅଂଧାରି ତେଜରେ ସବୁ ଫିକା ପଡ଼ିଗଲେ।

ସତ୍ୟ ପ୍ରକାଶିତ ହେବାର ସେ ମୁହୂର୍ତ୍ତରେ ତ ଆକାଶ ଜଳିଉଠେ, ପବନ ଥରିଉଠେ। ଆକାଶ ଝଲସାଇ, ପବନ କଂପାଇ, ବଜ୍ର ବିଦ୍ୟୁତ୍ ଝଳିଉଠନ୍ତି। ବସୁଧା ବିଦୀର୍ଣ୍ଣ କରି ଶୂନ୍ୟ ପାତାଳର ମୁହଁ ଫୁଟିଉଠେ।

ସେ ତ ସୀତାର ପାତାଳ ପ୍ରବେଶର ମୁହୂର୍ତ୍ତ!

ଅହଲ୍ୟା ପାଷାଣୀ ହେବାର ମୁହୂର୍ତ୍ତ!

ଦ୍ରୌପଦୀର ବିବସନା ହେବାର ମୁହୂର୍ତ୍ତ!

ସତ୍ୟ ପ୍ରକାଶର ସେଇ ଜ୍ୱଳଂତ ମୁହୂର୍ତ୍ତରେ ତ ବାକୀ ସବୁ ମିଛ ହୋଇଗଲେ। ମୋର ଜନ୍ମ, ଜୀବନ, ସଂସାର – ସବୁ ଯେପରି ସେଇ ବିବସ୍ତ୍ର ମୁହୂର୍ତ୍ତରେ ନିଜକୁ ମିଥ୍ୟା ପ୍ରମାଣ କରି ଭସ୍ମ ହୋଇଗଲେ। ଧର୍ମସଭାପୀଠରେ, ବିଜ୍ଞ ସଜ୍ଜନମଣ୍ଡଳିରେ, ସୁଜେତା କ୍ଷାତ୍ର ସମାବେଶରେ ପ୍ରିୟ ପରିଜନ ଗହଣରେ ସେଦିନ ଯିଏ ଲାଂଛିତା ହେଉଥିଲା, ସେ ତ ଆଉ ସେତେବେଳେ 'କାହାରି କିଛି' ନଥିଲା, କେବଳ ସାଧାରଣ ଏକ ନାରୀ, ପୁରୁଷର ଆଖିରେ ଯାହାର ଦେହ ଭିନ୍ନ ଆଉ କିଛି ସ୍ୱୀକୃତି ନଥିଲା, ଯାହାକୁ ନେଇ ତା'ର ଆତ୍ମୀୟ ବୋଲାଉଥିବା ପ୍ରିୟଜନମାନେ ବଜାର ହାଟରେ ଆପଣା ମାନରକ୍ଷା ଆଳରେ ବିକାକିଣା କରୁଥିଲେ।

ମୁଁ ସେଇ ସାମାନ୍ୟ ସ୍ତ୍ରୀବୁଦ୍ଧିରେ କିନ୍ତୁ ଏ ଯାବତ୍ ବୁଝିପାରିଲି ନାହିଁ ସତ୍ୟର ପରୀକ୍ଷା ନିଜଠାରେ ନାଁ ଅପରଠାରେ? ଧର୍ମରାଜ ସତ୍ୟବଦ୍ଧ ହେବା ତାଙ୍କର ଏକକ

ବ୍ୟକ୍ତିଗତ ଦାୟିତ୍ୱ, ମୋ ଆତ୍ମା ତ ସେ ସତ୍ୟବଦ୍ଧ ନଥିଲା। ଦ୍ରୌପଦୀ-ପତି ରୂପେ ନୁହେଁ, ଅଗ୍ରଜ ପାଣ୍ଡବ ରୂପେ ନୁହେଁ, କେବଳ କୁରୁପୁତ୍ର ଯୁଧିଷ୍ଠିର ପରିଚୟରେ ହିଁ ସେ ନିଜକୁ ଅଂଗୀକାରବଦ୍ଧ କରିଥିଲେ। ତା ହୋଇନଥିଲେ ଦ୍ୟୁତକ୍ରୀଡ଼ାରେ ସେ ଆମର ସମ୍ମତି ବ୍ୟତିରେକେ ଯୋଗଦେଇପାରି ନଥାନ୍ତେ ଏବଂ ଦ୍ୟୁତକ୍ରୀଡ଼ା ତାଙ୍କର ଏକକ ଆମୋଦ ନହୋଇ ଆମ ସମସ୍ତଙ୍କର ଅଂଗୀକୃତ ଦାୟିତ୍ୱ ହୋଇଥାନ୍ତା। ଆଉ ପତି-ପତ୍ନୀ ଅଭିନ୍ନାତ୍ମା ଯଦି– ମତେ ପଣ୍ୟ ରଖିବା ମାତ୍ରେ ତ ସେ ନିଜେ ପଣ୍ୟ ହୋଇଯାନ୍ତେ। ପଣ୍ୟକାରୀର ଭୂମିକା-ବିଚ୍ୟୁତ ହୋଇଯାଇଥାନ୍ତେ। ମତେ ତାଙ୍କଠାରୁ ଭିନ୍ନ ଓ ସାମାନ୍ୟ ମଣିଥିଲେ ବୋଲି ତ ଅକୁଣ୍ଠରେ ଦ୍ରବ୍ୟପ୍ରାୟ ବିବେଚନା କରିଦେଲେ।

ନିଜ ଭିନ୍ନ ଅନ୍ୟ ଆତ୍ମାକୁ କ୍ରୟ ବିକ୍ରୟ କରିବାର ଅଧିକାର କ'ଣ କାହାରି ଅଛି? ଶାସ୍ତ୍ରର ଅଛି? ସମାଜର ଅଛି? ଆଉ ପତ୍ନୀର ମର୍ଯାଦାକୁ ସ୍ୱାମୀ ପଣ୍ୟ କରିଦେବାର ଅଧିକାର ଶାସ୍ତ୍ରତଃ ସିଦ୍ଧ, ମାତ୍ର ପତ୍ନୀତ୍ୱର ମର୍ଯ୍ୟାଦା ରକ୍ଷା ପତିର ଧର୍ମ ନୁହେଁ? ଧର୍ମରାଜ ପଣରକ୍ଷା ବେଳେ ଯୁଧିଷ୍ଠିରଙ୍କ ସ୍ୱତଂତ୍ର ଭୂମିକାରେ ସତ୍ୟବଦ୍ଧ ହୋଇଥିଲେ ନା ପଞ୍ଚଭ୍ରାତା ଓ ପାଞ୍ଚାଳୀର ଏକକ ପ୍ରତିନିଧିତ୍ୱ କରୁଥିଲେ? ଦ୍ରୌପଦୀ କ'ଣ ରାଜ୍ୟ, ବସ୍ତ୍ର, ପାଳିତ ପଶୁ, ଭୂସଂପତ୍ତି?

ସ୍ତ୍ରୀକୁ ଦ୍ରବ୍ୟ ଜ୍ଞାନ କରିବାରେ ଅନୁଚିତତା କିଛି ନାହିଁ। ତା'ର ମହତ୍ୱ ରକ୍ଷାବେଳେ କିଂତୁ ନ୍ୟାୟ ଅନ୍ୟାୟର ବିଚାର ପ୍ରଶ୍ନ ଉଠାଯାଇପାରେ।

କେଉଁ ନ୍ୟାୟ, କେଉଁ ଧର୍ମର ଦ୍ୱାହିରେ ଧର୍ମରାଜ ପଣ୍ୟ କରିଦେଲେ ମୋର ଶ୍ରେଷ୍ଠଧର୍ମ– ନାରୀତ୍ୱର ମାନକୁ– ଯାହା କେବଳ ନାରୀ ହିଁ ଜଣକୁ ସ୍ୱେଚ୍ଛାରେ ସମର୍ପଣ କରିପାରେ? ନାରୀର ସେଇ ମାନ ଉପରେ ତା'ର ସ୍ୱୀକୃତି ବିନା କେଉଁ ପୁରୁଷର ଅଧିକାର ଅଛି? ଏବଂ ନାରୀର ସେ ମାନ ବିଷୟରେ ଯେ ସଚେତନ ନୁହେଁ ସେ କି ପୁରୁଷ? ନାରୀର ସେ ମାନକୁ ଯେ ରକ୍ଷା କରି ନ ପାରେ ପୌରୁଷର କି ସମ୍ମାନ ସେ ନାରୀଠାରୁ ପ୍ରତ୍ୟାଶା କରିବ?

ନାରୀର ଶ୍ରେଷ୍ଠ ବୈଭବ ସେ ମାନକୁ ଯେ ସମ୍ମାନ କରେ, ସେଇ ତ କେବଳ ତା ଆଖିରେ ସୁପୁରୁଷ, ତା'ର ପ୍ରାଣପୁରୁଷ।

ହେ ପୁରୁଷୋତ୍ତମ! ନ୍ୟାୟ ଅନ୍ୟାୟ ମୁଁ ବୁଝେନାହିଁ। ସବୁ ଧର୍ମ ଅଧର୍ମ, ନୀତି ଅନୀତି, ଭଲମଂଦର ସେଇ ଦ୍ୟୁତକ୍ରୀଡ଼ାକାଳୀନ ବିସର୍ଜନ ମୁହୂର୍ତରେ ହିଁ ମୁଁ ଆବିଷ୍କାର କରିଥିଲି ତୁମେ ମୋର ସତ୍ୟ, ଧର୍ମ, ଜୀବନ, ସ୍ତ୍ରୀର ଗୌରବ, କୁଳରମଣୀର ମର୍ଯାଦା, ନାରୀତ୍ୱର ଅଭିମାନ, ସବୁ ଧୂଳିରେ ଧୂଳି ହୋଇ ଲୋଟିଯିବାର ମୁହୂର୍ତରେ, (ଏକ ପୁରୁଷର ଦୁନିଆଁରେ ନାରୀ ହୋଇ ବଂଚିବାର ଦୁର୍ଭାଗ୍ୟକୁ ଚିହ୍ନିନେଲାବେଳେ) କେବଳ ତୁମକୁ ହିଁ ପୁରୁଷୋତ୍ତମ ରୂପେ ଦେଖିଛି।

ଯଥାର୍ଥ ପୁରୁଷ ନହେଲେ ଯଥାର୍ଥ ନାରୀତ୍ୱକୁ କିଏ ଚିହ୍ନିବ?

ସତ୍ୟ ରକ୍ଷା ନାମରେ ପରିଣୀତା ପତ୍ନୀର ମର୍ଯ୍ୟାଦାକୁ ପରପୁରୁଷ ହାତକୁ ଟେକିଦିଆଯାଇପାରେ, ସ୍ୱାମୀଧର୍ମ ରକ୍ଷାକରି କିନ୍ତୁ ସ୍ତ୍ରୀକୁ ସୁରକ୍ଷା ଦିଆଯାଇପାରେନା – ଏହା ଯେଉଁ ସମାଜର ନିର୍ଦ୍ଧାରିତ ନୀତି, ତାକୁ ଉଲ୍ଲଘଂନ କରିବାର ଶୌର୍ଯ୍ୟମୟ ପୌରୁଷ କେବଳ ତୁମର ହିଁ ଅଛି !

ପାଣ୍ଡବମାନେ କିଭଳି ଦୁର୍ଜ୍ଜୟ ଧନୁର୍ଦ୍ଧର, କେତେ ରାଜ୍ୟ ଜୟ କରିଥିଲେ, କେତେ ଦେବାସୁରଙ୍କୁ ବଶୀଭୂତ କରିଥିଲେ, କେତେ ରାଜସୂୟ ଅଶ୍ୱମେଧର ବାନା ବାଂଧିଥିଲେ, ତାହା ତାଙ୍କ ପରବର୍ତ୍ତୀ ବଂଶଧର ଗାନ କରୁଥାନ୍ତୁ । ସେମାନଙ୍କ ପ୍ରେମିକ ମନକୁ କୋଟି ହିଡିଂବା ଉଲୁପୀ ସୁଭଦ୍ରା ଚିତ୍ରାଂଗଦା ମାପିବୁଲୁଥାନ୍ତୁ । ମୁଁ କିନ୍ତୁ ଜାଣେ ପ୍ରେମ ଯାହାର ହୃଦୟରେ ଥାଏ, ସେ ଭୀରୁ ହୋଇପାରେନା । ଆତ୍ମାର ବାଣିଜ୍ୟ କରିପାରେନା । ପ୍ରିୟାର ଅସମ୍ମାନ ସହିପାରେନା ।

ସେଇଥିପାଇଁ ସେଦିନ ମୋ ସତ୍ତାରୁ ସେ ଛଳନାବରଣସବୁ ଖସିପଡ଼ିଲା ପରେ ନିରାବରଣା ଦ୍ରୌପଦୀ ଜାଣିଲା ଯେ ସେ ପ୍ରକୃତରେ କାହାରି କେବେ କିଛି ନଥିଲା । ତାକୁ କେବଳ ଗୋଟିଏ ମିଛ ଘଟାଟୋପ ଭିତରେ ଘୋଡ଼ାଇ ରଖାଯାଇଥିଲା । କାହାର ଦୁହିତା, କାହାର ଭଗ୍ନୀ, କାହାର ବଧୂ, ସବୁ ସଂପର୍କରେ ସୁରକ୍ଷିତା (ସେଇଥିପାଇଁ ଅରକ୍ଷିତା ରୂପରେ ସେଦିନ ତା'ର ନବଜନ୍ମ ହୋଇଗଲା !) ଅତି ଯତ୍ନରେ ସେଇ ଝଲମଲ ମହାର୍ଘ ପରିଚୟର ବସ୍ତ୍ରଗୁଡ଼ିକରେ ନିଜକୁ ମଂଡନ କରି ଗର୍ବ ଉଲ୍ଲାସରେ ମୁଁ ଫାଟିପଡୁଥିଲାବେଳେ ତୁମେ ହୁଏତ ମନେ ମନେ ଆମୋଦ ଅନୁଭବ କରୁଥିଲ । ତୁମେ ସେ ଅଂଗାବରଣମାନଙ୍କୁ ଖୁବ୍ ଚିହ୍ନିଥିଲନା ! ଦ୍ରୁପଦନନ୍ଦିନୀ, ହସ୍ତିନା ରାଜବଧୂ, ପାଣ୍ଡବଙ୍କ ସମାଦୃତ ପତ୍ନୀର ଗୌରବ, ତା ସହ କର୍ଣ୍ଣର ଈର୍ଷାଳୁ ଜ୍ୱଳନ, ଦୁର୍ଯ୍ୟୋଧନର କୁଟିଳ ଦୃଷ୍ଟି, ସବୁ ପରସ୍ତ ପରସ୍ତ ଗୁଡ଼ାଇ ହୋଇ ମତେ ମୋ'ଠାରୁ ଲୁଚାଇ ରଖିଥିଲେ । ସେଇ ଅଂଗରଖା ଭିତରେ ମୁଁ ନିଜକୁ କେବଳ କନ୍ୟା, ବଧୂ, ପତ୍ନୀ ବୋଲି ମଣୁଥିଲି । ନିଜକୁ କେବଳ 'ସେତିକି' ବୋଲି ମଣୁଥିଲି । ମୋର କ୍ରିୟା ପ୍ରତିକ୍ରିୟା ସେଇମାନଙ୍କୁ ଘେରି ମତେ ସଂଚାଳିତ କରୁଥିଲା । ଅଥଚ... କେତେ ଶୀଘ୍ର ସେ ଛଳନାର ବିନାଶ ଆସିଥିଲା !

ତା'ପରେ ତ... ସାରା ଜୀବନ ସେଇ ମିଛ ପରିଚୟର ବୋଝକୁ ମୁଣ୍ଡାଇ ମତେ ବଂଚିରହିବାକୁ ପଡ଼ିଲା ।

ଏକଥା କ'ଣ କେହି ଜାଣିପାରିଥିବ ଯେ, ସବୁ ମିଛ ହୋଇଯିବାର ସେ ମୁହୂର୍ତ୍ତରେ ମୁଁ ନିଜେ ବି ମୋ ପାଇଁ ମିଛ ହୋଇଗଲି । ଅତ୍ୟୁଜ୍ଜ୍ୱଳ ଦିବାଲୋକରେ ବି ମହାଅଂଧାରର ନିଚ୍ଛିଦ୍ର କୃଷ୍ଣାବରଣ ମୋ ଚାରିପାଖର ପୃଥିବୀକୁ ଲୁଚାଇଦେଲା । ମୋ ନିଜ ଛାଇଟି ପର୍ଯ୍ୟଂତ ବି ହଜିଗଲା । ଆଲୁଅ ଖୋଜିହେଉଥିବା ମୋର ବ୍ୟାକୁଳ ହାତ ଦୁଇଟି ଶୂନ୍ୟତାର ସେଇ କଳାକାଚ ଦେହରେ ସଜୋରେ ଧକ୍କା ଖାଇ ମୂହ୍ୟମାନ ହୋଇଗଲା । ପାଦତଳେ ମାଟି ନଥିଲା । ଉପରେ ଆକାଶ ନଥିଲା ।

ନିଃଶ୍ୱାସରେ ପବନ ନଥିଲା । ଆଖିରେ ଲୁହ ତ' ଜାଣି ନଥିଲା । ସବୁ ଭରସାର ଆଶ୍ରୟ ରୂପେ ଗୋଟାଏ ବିରାଟ ଶୂନ୍ୟତାକୁ ହିଁ ମୋ କଣ୍ଠାଗ୍ରତ ହୃଦୟ ତା'ର ଆର୍ତ୍ତିକୁ ଟେକିଦେଇଥିଲା ।

ମୋ ଜୀବନରେ ତୁମର ପ୍ରୟୋଜନ କେତେ ଥାଇପାରେ, ଆଗରୁ ତାହା କିଛି ବି ମନେହୋଇନଥିଲା । ସେଦିନର ସେଇ ଭୟାନକ ମୁହୂର୍ତ୍ତରେ ତୁମେ କିଂତୁ ମୋ ଜୀବନର ଏକମାତ୍ର ଅବଲଂବନ ହୋଇପଡ଼ିଲ । ତୁମ ସହ ସଂପର୍କର ଅର୍ଥ କିଛି ଥାଇପାରେ ବୋଲି ଜୀବନ ଜାଣିନଥିଲା, ଅଥଚ ସେଦିନ ଜୀବନକୁ କେବଳ ତୁମେଇ ଅର୍ଥଦାନ କଲ । ଦିନେ ରାଜବାଳାର ଦୃପ୍ତ ଗାଂଭୀର୍ଯ ନେଇ ସ୍ୱୟଂବର ସଭାରେ ମୁଁ ତୁମକୁ ଦୂରରୁ ଦେଖିଥିଲି । ସମସ୍ତଙ୍କ ପରି ତୁମର ମୁଗ୍‌ଧ ସମାଦର ଓ ସଂଭ୍ରମ ଦୃଷ୍ଟିକୁ ପ୍ରତ୍ୟାଶା କରିଥିଲି । ପରେ ବଂଧୁପତ୍ନୀର ମର୍ଯାଦା ବିନା ବାକ୍ୟରେ ଦାବୀ କରିଥିଲି । ମାତ୍ର ସେଦିନ କୁରୁସଭାରେ ଭିକାରୁଣୀର ଦୀନତାକୁ ହିଁ ତୁମଠାରୁ ଭିକ୍ଷା ମାଗିଲି । ତୁମେ ମୋର ରାଜଐଶ୍ୱର୍ଯ ହରାଇବା ଦେଖିଲ । ମୋର ମାନ ଅପମାନ ଭୂଲୁଣ୍ଠିତ ହେବା ଦେଖିଲ । ଶେଷରେ ମୋର ନାରୀତ୍ୱର ଶ୍ରେଷ୍ଠ ଅହଂକାର ଲଜ୍ଜାକୁ ମଧ ମୁଁ ତୁମ ଉଦ୍ଦେଶ୍ୟରେ ବଦ୍ଧ ଅଂଜଳିରେ ଉତ୍ସର୍ଗ କରିଦେଲି ।

ଜଗତ ସହ ସଂବଂଧର ସୂତ୍ରଟି ସେଇ ଯେ ମୋର ନାରୀତ୍ୱ, କନ୍ୟା ଭଗିନୀ ଜାୟା ଜନନୀ । ସେ ସଂବଂଧ କେତେ ରଂଗିନ ସୂତା ବିସ୍ତାରି ମତେ ଗୁଡ଼ି କରି ଆକାଶରେ ଉଡ଼ାଇଛି, ଖେଳାଇଛି, ଉଲ୍ଲସିତ କରିଛି, ଆତଙ୍କିତ କରିଛି । ମାତ୍ର ଗୋଟାଏ ଧୂମାଳ ଝଡ଼ରେ ସବୁ ଡ଼ୋରି ଛିଡ଼ିଗଲା । ସବୁ ସଂପର୍କର ବଂଧନ ଛିନ୍ନଭିନ୍ନ ହୋଇଗଲା ।

ନାରୀସତ୍ତାର ସ୍ୱତଂତ୍ର ସଂବଂଧ ନେଇ ଆଉ କାହା ପାଖରେ ମୁଁ ସେଇଦିନୁ ଠିଆହୋଇ ପାରିନାହିଁ । ନାରୀତ୍ୱର ଅହମିକାକୁ ଦୁନିଆଁର ରାଜଦାଣ୍ଡରେ ବିସର୍ଜିଦେଲି । ଶେଷ ଲଜ୍ଜା ନାରୀତ୍ୱର, ତାକୁ ମଧ ତୁମ ପାଖେ ଜଳାଂଜଳି ଦେଇଦେଲି । ବଢ଼ାଇଥିବା ମୋର ଶୂନ୍ୟ ହାତ ପାଇଁ ତୁମେ କେଉଁ ସଂପର୍କର ହାତ ବଢ଼ାଇଦେବ, କିଛି ଜାଣିନଥିଲି । କେବଳ ଏତିକି ଜାଣିଥିଲି ଗୋଟିଏ ପରିଚୟରେ ମାତ୍ର ମୁଁ ଏଣିକି ବଂଚିରହିବି । ମୋର ନିଜ-ତ୍ୱର ପରିଚୟ । ରାଜକନ୍ୟା ରାଜରାଣୀ ରାଜବଧୂ ଦ୍ରୌପଦୀ ନୁହେଁ । ତେଜସ୍ୱିନୀ ଯାଜ୍ଞସେନୀ ଯଜ୍ଞଜାତା କୃଷ୍ଣା ନୁହେଁ, କେବଳ ଏକ ଦୀନା ଦୁଃଖିନୀ ଅରକ୍ଷଣୀୟା ନାରୀ !

ସମସ୍ତଙ୍କ ଗହଣରେ ଥାଇ ମଧ ଅଂତରପ୍ରଦେଶରେ ସେ ନାରୀ ତ ସେଇଦିନୁ ଏକାକିନୀ । ତା'ପରେ ଆଉ କେଉଁ ପୃଥିବୀ-ପୁତ୍ରକୁ ସେ ତା'ର ନିଜର ସେଇ ଗହନପୁରରେ ପ୍ରବେଶ କରିବାକୁ ସମର୍ଥ ହେବା ଦେଖିନାହିଁ ।

ସଖା କୃଷ୍ଣ ! ତୁମେ ଯେ କେବଳ ପାର୍ଥିବ ନୁହଁ, ତୁମେ ଯେ ଆକାଶ ବତାସ, ତୁମେ ଯେ ସମୁଦ୍ର ଉଚ୍ଛାସ, ତୁମେ ବାତଅନଳ । ବାରବାର ମତେ ତୁମର

ସେ ରୂପ ପରିଚୟ ଦେବାକୁ ବସିଲାବେଳେ ସବୁ ଥର ମୁଁ ହାରିଛି ଏବଂ ସେ ପରାଜୟର ନିଷ୍ଫଳ କ୍ରୋଧକୁ ଅଭିମାନର ତୀର କରି ତୁମ ଉପରକୁ ଫିଙ୍ଗିଛି। ସେ ଅହଂକାରର ବସ୍ତ୍ରାଂଚଳ ସବୁ ଦୁନିଆଁର ଦୁଃଶାସନ-ହସ୍ତରେ ଉଡ଼ିଯାଇଛି। ଦୁଃଖ କେମିତି ଦୈନ୍ୟକୁ ଚିହ୍ନାଏ, ଆଘାତ କେମିତି ବିବସ୍ତ୍ର କରେ, ସେଦିନ ଜାଣିଲି।

ସେଦିନ ଜାଣିଲି, ମୋର ଅନାବରଣ ମୁହୂର୍ତ୍ତରେ ସମଗ୍ର ବିଶ୍ୱ ଅସହାୟ ସ୍ତବ୍ଧତାରେ ଲଜ୍ଜିତ ଆଖି ବୁଜିଦେଇଥିଲେ ବି ତୁମେ କାହିଁକି ମୋର ମିଥ୍ୟାଚରଣର ନିଷ୍କାସନ ଶେଷ ପର୍ଯ୍ୟନ୍ତ ଅଦୃଶ୍ୟ ଦର୍ଶକର ଭୂମିକାରେ ନିଷ୍ପଲକ ହୋଇ ବସିରହିଥିଲ।

ସେ ଚରମ ମୁହୂର୍ତ୍ତରେ ଆଉ କିଛି ଲାଂଛନା ଲାଂଛନା ନଥିଲା। ଦୁର୍ଦ୍ଧର ପଚଂପତି ସତ୍ତ୍ୱେ ଯେ ଅରକ୍ଷଣୀୟା, ତା'ର ଶରଣରକ୍ଷଣ କେବଳ ତୁମେ ହୋଇପାର, ସେତକ ଦୁର୍ଯୋଧନ ବିନା, ଦୁଃଶାସନ ବିନା, କର୍ଣ୍ଣ, ଯୁଧିଷ୍ଠିର ବିନା ଓ ସର୍ବୋପରି ତୁମ ବିନା ଏ ବିମୂଢ଼ା କୃଷ୍ଣା କୁରୁସଭାଂଗନରେ କିପରି ବୁଝିଥାଆନ୍ତା ?

ସେଇ ଭରସାରେ ତ ବିଶ୍ୱାସର ହାତ ଦୁଇଟି ମୋର ଶୂନ୍ୟ ଆକାଶକୁ ଟେକିହୋଇଗଲା। ଆଉ ତୁମ ଅଭୟର ମୁକ୍ତ ହସ୍ତ ଦୁଇଟି ତଳକୁ ଲଂବିଆସିଲା। ପୃଥିବୀ ମୋର ତୁମ ଭରସାରେ ପୂର୍ଣ୍ଣ ହୋଇଗଲା।

ହେ ବଂଧୁ, ହେ ସଖା, ମୋ ଆତ୍ମାର ଅନ୍ତରଂଗତମ ଦୋସର ! ସବୁ କିଛି ହରାଇବସିବାର ସେ ଶୂନ୍ୟ ମୁହୂର୍ତ୍ତରେ ଯେ ତୁମେ ମୋ'ଠାରେ ପରିପୂର୍ଣ୍ଣ ହୋଇଗଲ। ସେଇ ଅତ୍ୟୁଜ୍ଜ୍ୱଳ ଦ୍ୱିପ୍ରହର ନୀଳରେ କାଳିମାର ଗୋଟାଏ ଘନାବରଣ ମୋର କୃଷ୍ଣାଂଗକୁ ଆଚ୍ଛାଦିତ କରି ତୁମ ନୀଳାଂଗରେ ଏକାକାର ହୋଇଯିବା ବେଳେ ମୁଁ ତୁମର ଅଭିନ୍ନାତ୍ମା ହୋଇଗଲି। ଦ୍ରୌପଦୀର ସବୁ ନିଜସ୍ୱ-ପରିଚୟର ଅଭିମାନ ତୁଟିଗଲାପରେ କୃଷ୍ଣାର ଶେଷ ମାନ-ସମର୍ପଣ ତାକୁ କୃଷ୍ଣାତ୍ମା ରୂପେ ପ୍ରତିଷ୍ଠିତ କରିଦେଲା।

ତୁମେ ମତେ ବସ୍ତ୍ରାନ୍ୱିତା କଲ। ଦେହକୁ ଦୁନିଆଁ ଆଖିରେ— ହୃଦୟ ତୁମ ହାତତଳେ ଉନ୍ମୁକ୍ତ ହୋଇଗଲା ପରେ ଆଉ କେଉଁ ଲଜ୍ଜା ମୋର ପୋଡ଼ିଯିବାକୁ ବାକୀଥିଲା ହେ ଲଜ୍ଜାହାରୀ ? ତଥାପି ତୁମେ ମତେ ସବସ୍ତ୍ରା କଲ। କାରଣ, ଏବେ ମୋର ଲାଜରକ୍ଷାର ଦାୟିତ୍ୱ ଅନ୍ୟଠାରୁ ଏବଂ ମୋ'ଠାରୁ ତୁମେ ନିଜ ହାତକୁ କାଢ଼ିନେଇଥିଲ। କାରଣ, ଏଣିକି ମୋର ଲଜ୍ଜା ତୁମେ ଥିଲ।

ସେଇଦିନୁ ତ ତୁମେ ମତେ ତୁମର ସୁବିପୁଳ ସ୍ନେହାଂଚଳରେ ଆବୃତ କରିରଖିଛ। ନିର୍ବସନା ହେବାର ସେ ଦୁଃସହ ସ୍ଥିତିରେ ତୁମ ସୁରକ୍ଷାର ସ୍ନେହ-କୋମଳ ଉତ୍ତରୀ ମୋର ନିରାବରଣତାକୁ ଆବୃତ କରି ରଖିଥିଲା। ସେଇଦିନୁ ତ ହେ ମାଧବ, କେବଳ ଏ ଅଂଗରେ ନୁହେଁ, ମନରେ ପ୍ରାଣରେ ଆତ୍ମାରେ ବି ଯେ ଏଇଭଳି ସର୍ବରିକ୍ତତାର ଲଜ୍ଜାକର ଦୁଃସହ ଅନୁଭୂତି କେବଳ ତୁମରି ବଂଧୁତ୍ୱକୁ ତା'ର ଏକମାତ୍ର ଆଚ୍ଛାଦନ ବୋଲି ଅବଲଂବନ କରିଆସିଛି।

ଏବଂ ଆଜି ମନେହେଉଛି, ସେଦିନ ସେ ଦୁଃଖସଂତାପର ନିଆଁରେ ମୁଁ କେବଳ ଏକା ଜଳୁନଥିଲି, ତୁମେ ବି ସେ ମର୍ମଦାହକୁ ମୋ ଭିତରେ, ମୋ ସାଥୀରେ ଭୋଗ କରିଛ। ବରଂ ମୋ ଭିତରେ ତୁମେ ଥାଇ, ଭିତରର ଶକ୍ତି ହୋଇ ସେ ବେଳେ ମତେ ତୁମେ ସଂଭାଳି ନେଇଛ।

ଆଶ୍ଚର୍ଯ୍ୟ ଯେ, ପରିବାର, ସଂସାର, କୁଳରାଜ୍ୟ – ଏ ସବୁ ସହ ଅଜସ୍ର ସଂବଂଧରେ ବଂଧା ମୁଁ ତୁମ ସହ ସଂବଂଧର ଗୋଟିଏ ପରିଚ୍ୟ ସୂତ୍ରକୁ ଲାଭ କରିନଥିଲେ ବି ସବୁ ସଂବଂଧର ଅବରୋଧ ଭିତରୁ କେଉଁ ମୁକ୍ତ ଦ୍ୱାର ଦେଇ ମୁଁ ତୁମ ସଂପର୍କହୀନତାର ମୁକ୍ତାକାଶ ତଳେ ଉଭା ହୋଇଯାଏ, ମନରେ ପ୍ରାଣରେ ତୁମ ପୃଥିବୀର ମମତା-ଛୁଆଁ ବାଜେ, ଆତ୍ମାରେ ତୁମ ବିମୁକ୍ତିର ଆକାଶୀ-ସ୍ପର୍ଶ ଭରିଯାଏ।

ଏ ଧରଣୀରେ ଅନ୍ତରଂଗତାର ତ ଅନେକ ସଂପର୍କ। ତଥାପି ଆତ୍ମୀୟତାର ଦାବୀରେ କାହାକୁ କେଉଁଠି ଅଟକାଇ ହୁଏନାହିଁ। ନିଜେ କେଉଁଠି କାହାପାଇଁ ଅଟକିଯାଇ ହୁଏନାହିଁ। ଜୀବନଟା ଏମିତି।

ଯଦି କେଉଁ ଅଭାବିତ ମୁହୂର୍ତ୍ତରେ କେଉଁ ଦୁର୍ଲଭ ଅନ୍ତରଂଗତା ନିକଟରେ ଆତ୍ମୀୟତାର ପରିଚ୍ୟ ଦାବୀଟି ଥରେ ସଫଳ ହୋଇଯାଏ, ସେ ଲଗ୍ନଟି ଜନ୍ମର ସକଳ ବିଗତ ଓ ଅନାଗତକୁ ସାର୍ଥକ କରି ଏକ ଅଚ୍ଛିନ୍ନ ସଂବଂଧସୂତ୍ରରେ ଜନ୍ମାଂତରକୁ ଲଂଘିଯାଏ। ସତ୍ତାର ଜନ୍ମଜନ୍ମାଂତରର ଇତିହାସରେ ଏ ଘଟଣା ଥରେ ମାତ୍ର ଘଟେ।

(ତା'ପରେ, ଆଉ ଜନ୍ମାଂତରରେ ବି ସ୍ନେହ ସଂବଂଧର ପ୍ରୟୋଜନ ରହେନାହିଁ।)

ସଖା, କାହିଁକି ଏମିତି ହୁଏ ? ପୃଥିବୀରେ ସଂପର୍କମାନେ ହୁଏତ ବଦଳନ୍ତି ନାହିଁ, ହେଲେ ସଂପର୍କର ଅର୍ଥ ବଦଳିଯାଏ। ଏବେ ତ ସବୁ ପାର୍ଥିବ ସଂପୃକ୍ତି, ପୃଥିବୀର ପ୍ରୟୋଜନ ସିଦ୍ଧିର ସୂତାଖିଅମାନ ପୃଥିବୀକୁ ଛାଡ଼ିଯିବାବେଳେ ଆପେ ଆପେ ଛିଡ଼ିପଡୁଛନ୍ତି। ପରିତ୍ୟକ୍ତା ଦ୍ରୌପଦୀ ସହ ଶେଷ ପାର୍ଥିବ ସଂପର୍କକୁ ଅସ୍ୱୀକାର କରି ପଂଚଭ୍ରାତା ଅପାର୍ଥିବତା ଆଡ଼କୁ ମୁହାଁଇଛନ୍ତି। (ଜୀବନ-ଜଂଜାଳରେ ସହଭାଗିନୀ ହୋଇ ମର୍ତ୍ତ୍ୟଭାର ବହନ କରିବାକୁ ପତ୍ନୀଟିଏ ଲୋଡ଼ାଥାଏ, ସ୍ୱର୍ଗପଥର ସହଚାରିଣୀ ହେବାକୁ ନୁହେଁ) ମାତ୍ର ୟାପରେ ଯଦି ଜନ୍ମାଂତର ଆସେ, ସେତେବେଳେ ଯଦି ଏ କୃଷ୍ଣା ସହ ସେମାନେ ସଂବଂଧ ଲୋଡ଼ନ୍ତି, ତାହା କେବଳ ଏଇ ପାର୍ଥିବ ସଂଭୂତିରେ ହିଁ ଘଟିପାରେ। ପୃଥିବୀର ପରିଚ୍ୟକୁ ଅସ୍ୱୀକାର କରି, ପାର୍ଥିବ ସଂପର୍କକୁ ଅଗ୍ରାହ୍ୟ କରି, ଦ୍ରୌପଦୀକୁ ସେମାନେ ପୁନଶ୍ଚ ଲାଭ କରିପାରିବେ ନାହିଁ।

ଅଥଚ ହେ ସଖା, ଜନ୍ମ ଓ ମରଣରେ, ମର୍ତ୍ତ୍ୟ ଓ ଅମରାରେ, ଯଜ୍ଞାନଳର ଜ୍ୟୋତିଃସ୍ନାତ ପୀଠରେ ଓ ମରଣର ମହାଂଧକାର ସମ୍ମୁଖରେ ତୁମେ ହିଁ କୃଷ୍ଣାର ଜୀବନଧାରା ସହ ନିତ୍ୟ ସଂଯୁକ୍ତ ରହିଛ। ଦୁର୍ଦ୍ଦିନରେ ରକ୍ଷା କରିଚ୍ଛ, ବିପଦରେ ଅଭୟ ଦେଇଚ୍ଛ, ସୁଖ ଆନଂଦରେ ଅଂଶହର ହୋଇ ସୌଭାଗ୍ୟକୁ ସହସ୍ରଗୁଣିତ ବି କରିଛ।

ମୁଁ ବା କି ସୁଖ ଭୋଗ କରିଥାନ୍ତି, କରିପାରିଥାନ୍ତି, ଜାଣେନା। ମୋ ବଂଚିବାର ସୁଖକୁ ତ ଲୁହମାନେ ସାବ୍ୟସ୍ତ କରିଗଲେ। ଅଥଚ ସେ ଅଶ୍ରୁକ୍ଷରଣ ନଥିଲେ ତୁମକୁ ସ୍ମରଣ କରିବାର ଅବକାଶ, ତୁମର ସୁରକ୍ଷା-ସ୍ପର୍ଶକୁ ମୋର ଲଜ୍ଜାବରଣ ରୂପେ ଲାଭ କରିବାର ସୁଯୋଗ କିପରି ପାଇଥାନ୍ତି? ତୁମେ ମତେ ସୁଖ-ଦୀନା ହୁଏତ କରିଚ, କରୁଣା-ଦୀନା ନୁହେଁ।

ତୁମ ସୁଖଭୋଗର ଉପଲକ୍ଷ୍ୟରେ ମୁଁ ଆଉ ସୁଖଭୋଗର ପ୍ରତିଶ୍ରୁତି ଦାବୀ କରିବି ନାହିଁ। ତୁମର ବଂଧୁତ୍ୱ, ସ୍ନେହ, ସହୃଦୟତା ସହ କେଉଁ ସୁଖ ତୁଳନୀୟ? ସୁଖ-ସଂଭୋଗମାନେ ତ ଧରଣୀର ଧୂଳିକଣାରେ ବହୁ ରୂପରେ ବିଂଚିହୋଇ ଯାଇଛନ୍ତି। ହେଲେ ତୁମକୁ ପାଇବାର ସୁଖ ଲାଭ ପାଇଁ ମୋ ଆଗରେ ଯେ ଦୁଃଖ ସଂତାପର ଏକମାତ୍ର ପଥ ଉନ୍ମୁକ୍ତ। ମୁଁ ସୁଖ-ଆଶାରେ ତୁମକୁ ଛାଡ଼ିବି ନା ତୁମ ପାଇଁ ସୁଖ-ଆଶା ଭୁଲିବି? ତୁମକୁ ଛାଡ଼ି କେଉଁ ସୁଖର ମାନେ ବା ମୋ ପାଇଁ କ'ଣ ଅଛି? ଦୁଃଖକୁ ତ ଜାଣି ତୁମ ସ୍ନେହ ସାନ୍ତ୍ୱନାର ସ୍ପର୍ଶ ରୂପେ ଚିରଦିନ ଲାଭ କରିଛି।

ପାଣ୍ଡବଙ୍କୁ ତୁମେ ଦ୍ୱାରେ ଦ୍ୱାରେ ଘୂରାଇବ, ପାଣ୍ଡବ ଘରଣୀକୁ ବନେ ବନେ ବୁଲାଇବ। ସେଇ ସୁଯୋଗରେ ତୁମେ ସେମାନଙ୍କୁ ତୁମକୁ ସ୍ମରଣର ଅବକାଶ ଦେବ। ସଂଗସୁଖ ଦେବ। ହସ୍ତିନାର ରାଜଅଂତଃପୁର ଭିତରେ ମୁଁ ଯେ ତୁମର ବହୁ ଦୂରବର୍ତ୍ତୀ ହୋଇଯିବି। କୁଳବଧୂର ଅବରୋଧ ଠେଲି, ରାଜରାଣୀର ଆବରଣ ଘୁଂଚାଇ ଯେତେବେଳେ ସେତେବେଳେ ତୁମକୁ କିପରି ଦେଖିପାରିବି? ସେଇଥିପାଇଁ ତ ଖୋଲା ଆକାଶ, ମୁକୁଳା ପୃଥିବୀ ମଝିରେ ମୋର ବିସ୍ଫାରିତ ଆଖି ନିର୍ନିମେଷ ହୋଇଯାଇଛି।

× × × ×

ସମ୍ମୁଖରେ ଦୁର୍ଲଂଘ୍ୟ ହିମାଳୟ। ମୋ ପାଇଁ ପଥ ଶେଷ। ମହା ଅଜଣାକୁ ମୁଁ ହାତ ବଢ଼ାଇ ପାରୁନାହିଁ। ମୋର ପାଦ ମୋ ହାତର ବ୍ୟାକୁଳତାକୁ ବୁଝୁନାହିଁ। ଆଖିର ବ୍ୟାକୁଳତାରେ ଦ୍ରୁତ ଚଂଚଳ ହୋଇଉଠୁନାହିଁ। ଏ ପାଦ ଆଜି ମୋର ବେଡ଼ି, ବଂଧନ।

ସାମ୍ନାରେ ଆଉ କେହି ନାହିଁ। ମୋ ଭିତରେ ବାହାରେ କେବଳ ଏକ ନିରାଲଂବ ଯଂତ୍ରଣା। କିଂବା ମୁଁ ନିଜେ ସେହି ଯଂତ୍ରଣା, ମୋର ସମୁଦାୟ ବାସ୍ତବତା, ଜୀବନର ଏକମାତ୍ର ସତ୍ୟତା।

ସର୍ବାଂଗରେ ଦୁଃସହ ବିକଳତା। ଦେହ ମନର ବିରାଟ ବୋଝ ତଳୁ ସତ୍ତାର ଆର୍ତ୍ତନାଦ ଆଉ ସବୁ ସ୍ୱରକୁ ଚପାଇଦେଉଛି। ହିମାଳୟ ସେପାଖରେ ପୃଥିବୀର ସବୁ ନୀଳ ମାଧୁର୍ଯ୍ୟ ନୀଳ ଆକାଶକୁ ଉଠିଯାଇ ମତେ ଚାହିଁ ରହିଛି। ସେ ଦୁର୍ଲଭ

ନୀଳକୁ ମୁଁ ପହଂଚି ପାରୁନାହିଁ। ଏ ପାଖର ମରଣ ଅଂଧାର ଗ୍ରାସିଯାଉଥିବାବେଳେ ସେ ନୀଳ ସମ୍ମୋହନକୁ ମୁଁ ମୋ ଖୋଲା ଆଖି ଦେଇ ସମଗ୍ର ଚେତନାରେ କେବଳ ପାନ କରିନେଉଛି।

ସେ ନୀଳ ଯଜ୍ଞରେ ମୋ ସୁଖଦୁଃଖର ଯାବତୀୟ ରଂଗାନୁଭବକୁ ମୁଁ ହବନ କରିଦେଉଛି।

ଜୀବନର ଶେଷ ସମୟରେ କୁଆଡ଼େ ସ୍ମୃତିର ପୁନର୍ଜନ୍ମ ଘଟିଥାଏ। ଜନ୍ମାବଧି ସ୍ମୃତିମାନ କେଉଁ ବିସ୍ମୃତି-ଗର୍ଭର ଅତଳ ତଳୁ ମୁଦା ସିଂଦୁକର ଅମୁହାଁ ମୁହଁ ଖୋଲି ଅତୀତକୁ ବର୍ତ୍ତମାନ ଉପରେ ସଚାର କରିଦିଅନ୍ତି। ଅଥଚ ମତେ ଲାଗୁଛି ଏମାନେ ଠିକ୍ ସେ ଘଟଣାମାନଙ୍କର ପୁନର୍ନ୍ୟାସ ନୁହନ୍ତି, ଅବିକଳ-ରୂପ ନୁହନ୍ତି। ଘଟଣା ତଳର ଗୂଢ଼ ରହସ୍ୟ ଭେଦ କରି, ତା'ର ମର୍ମ ଉନ୍ମୋଚନ କରି କ'ଣ କାହିଁକି ଘଟିଥିଲା, ତାକୁଇ ପରସ୍ତ ପରସ୍ତ ଉଖାରି ଠିଆ କରିଦେଉଛନ୍ତି।

ଆଜି ମୋର ମନେହେଉଛି, ମୁଁ କେବଳ ଅଗ୍ନି-ଜାତା ନଥିଲି, ଆଗ୍ନେୟାତ୍ମା ଅନଳାତ୍ମା ରୂପେ ତୁମେ ମୋର ଆବିର୍ଭାବକୁ ସଂରଚନା କରିଥିଲ। ଆଉ ପଂଚପାଣ୍ଡବଙ୍କ ସହ ମୋର ସଂବଂଧ ସୂତ୍ର ପରିକଳ୍ପନାରେ ମୁଁ କେବଳ ଜାୟା ରୂପରେ ପଂଚଧା ନୁହେଁ। ଧର୍ମ, କର୍ମ, ପାଳନ, ରକ୍ଷଣ ଓ ସର୍ବୋପରି ଦୂରଦୃଷ୍ଟିର ଶକ୍ତିରେ ପଂଚଶକ୍ତି-ବିପୁଳା ଏକାଧାର ହୋଇ ଜନ୍ମ ଲଭିଛି, ପଞ୍ଚ ପାଣ୍ଡବଙ୍କ ଏକ ଏକ ବୈଶିଷ୍ଟ୍ୟକୁ ସଂବହନ ଓ ସଂବର୍ଦ୍ଧିତ କରୁଥିବା କଠୋର ପ୍ରାଣଶକ୍ତିକୁ ମୋର ଏକମାତ୍ର ଜୀବନ ରୂପେ ଲାଭକରିଛି।

ସେ କଠୋରତାର ଚାପ ଆଜି ମତେ ମଧ୍ୟ ନିଃଶେଷିତ, ଶୂନ୍ୟ କରିଦେଉଛି। ଏଇ ଯେ କ୍ଷୋଭ ସଂତାପ ବ୍ୟର୍ଥତାମାନ ଜୀବନକୁ ଭାରାକ୍ରାଂତ କରିଦେଇଛନ୍ତି, ଦୁଇ ହାତରେ ଯେ ଲାଂଛନା ଓ ଅପମାନର ପ୍ରତିକ୍ରିୟା-ବିଷଲିପ୍ତ ଭୟଂକର ଶରମାନ ପ୍ରତିଆଘାତ କରିବାକୁ ଉଦ୍ୟତ ରହିଛନ୍ତି, ତାହା ଅନ୍ୟମାନଙ୍କ ପ୍ରତି ଉନ୍ମୋଚିତ କରି ମଧ୍ୟ ନିଜେ ମୁଁ ଭାରମୁକ୍ତ ହୋଇପାରୁନାହିଁ।

ହେ ସର୍ବସଂତାପହାରୀ, ଯେଉଁ ପ୍ରତିକ୍ରିୟାର ଜ୍ୱାଳା ନିଜେ ସହିପାରୁନାହିଁ, ଯେଉଁ ଆଘାତର ବେଦନା ନିଜେ ବହିପାରୁନାହିଁ, ତାକୁ ମୋ'ରି ଭଳି ଦୁର୍ବଳ ଅନ୍ୟମାନଙ୍କ ଉପରକୁ ଫିଙ୍ଗିଦେବାକୁ ମନ ବଳୁନାହିଁ। ଦୁର୍ଯୋଧନ ଶତ ଭ୍ରାତା ରଣ ପ୍ରାଂଗଣରେ ଅମରତ୍ୱ ପାଇଥାଆନ୍ତୁ, ଭୀଷ୍ମ ଦ୍ରୋଣ କର୍ଣ୍ଣ ଯୁଗେ ଯୁଗେ ସାର୍ଥକ ପୌରୁଷର ସ୍ତୁତିବଂଦନା ଶୁଣୁଥାଆନ୍ତୁ। ପଂଚଭ୍ରାତା ଯାବତ୍‌ଚଂଦ୍ରାର୍କ ଯଶମୁକୁଟରେ ଉଜଳିଉଠୁଥାନ୍ତୁ ଓ ମହାମହିମ ଅଗ୍ରଜ ପାଣ୍ଡବ ସଶରୀର ସ୍ୱର୍ଗଲାଭ କରନ୍ତୁ।

ମାତ୍ର ମୋର ପ୍ରତିହିଂସାର ଦୁଇହାତ ଖାଲିହୋଇଯାଉ। ଚିତ୍ତ ଦ୍ୱେଷ-ମୁକ୍ତ ହୋଇଯାଉ। ଅନ୍ୟମାନଙ୍କର ହିଂସା-ଦ୍ୱେଷର ଆଘାତ ଅପେକ୍ଷା ତା'ର ପ୍ରତିକ୍ରିୟାରୁ ଜାତ ମୋ ହୃଦୟର ବିଦ୍ୱେଷ-ବିଷ ଯେ ମତେ ଅଧିକ ରକ୍ତାକ୍ତ କରିଛି।

ସଖା, ଏବେ ସବୁ ଦୁଃଖବୋଝ ତୁମ ପାଦତଳେ ଅଜାଡ଼ିଦେଇ ମୋର ଶୂନ୍ୟ ହାତ ଦୁଇଟିକୁ ତୁମର ପ୍ରସାରିତ ଉନ୍ମୁକ୍ତ ହାତ ଭିତରକୁ ସମର୍ପିଦେଉଛି।

ଆଜି ମୋର ଆଉ କିଛି ଅଭିଯୋଗ ନାହିଁ। କାହାରି ପାଖରେ ନାହିଁ କି କାହାରି ବିରୋଧରେ ନାହିଁ। ନିନ୍ଦା ବା ସ୍ତୁତି ନାହିଁ। ଆପଣା ପର ନାହିଁ। ପାଣ୍ଡବ, କୌରବ ସବୁ ଅର୍ଥହୀନ ଶବ୍ଦ-ପରିଚୟ ମାତ୍ର। ଭୀମ ଦୁର୍ଯୋଧନ କର୍ଣ୍ଣ ଅର୍ଜୁନ ଗୋଟାଏ ଗୋଟାଏ ହାବୁକା ଢ଼େଉ ଭଳି କୂଆଡ଼େ ଦୂରକୁ ଚାଲିଗଲେଣି। ଶତ୍ରୁ ବା ମିତ୍ର ହୋଇ ଆଉ କେହି ନାହିଁ। ଅସହାୟ, ଅକ୍ଷମ ମଣିଷର ପରିଚୟରେ ଆଜି ସମସ୍ତେ ସମସ୍ତଙ୍କର ସମକକ୍ଷ ହୋଇଗଲେଣି। ଗୋଟିଏ ଅପରିଚୟର ସାମୁଦ୍ରିକ ଅତଳରେ କୋଟି କୋଟି ତରଂଗିତ ପରିଚୟ ଏକାକାର ହୋଇଗଲେଣି। ଏବେ ବ୍ୟର୍ଥ ପୌରୁଷରେ କର୍ଣ୍ଣ ଅର୍ଜୁନ ସମାନ ବିବର୍ଣ୍ଣ ହୋଇଯାଇଛନ୍ତି। ଭୀମ ଦୁର୍ଯୋଧନ ଅକ୍ଷମ ଆସ୍ଫାଳନର ଏକ ବୀଭତ୍ସ କଦାକାର ରୂପ ହୋଇଯାଇଛନ୍ତି। ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କ ସହ ଏକାପରି ଅଂଧ ହୋଇଯାଇଛନ୍ତି। ମୋ ଲାଂଛନାକାରୀ ଓ ରକ୍ଷାକର୍ତ୍ତା, ମୋ ପଂଚପତି ଓ ଶତଶତ୍ରୁଭ୍ରାତା ଗୋଟିଏ ପରିଚୟର ମୁଖାରେ ମୋ ଆଗରେ ଉଭାହୋଇଯାଇଛନ୍ତି।

ଏ ବେଳେ ମନେହେଉଛି, ସେମାନେ ସତରେ କେହି ମୋର ଶତ୍ରୁ କି ମିତ୍ର ନଥିଲେ। କେବଳ ଏକ ବିରାଟ ନିର୍ଦ୍ଦେଶର ଇଂଗିତରେ ସେମାନେ ମୋ ଜୀବନକୁ ସେଇ ରୂପରେ ଆସିଥିଲେ। ମତେ ଜଳାଇଗଲେ, ତତାଇଗଲେ, କେହି ଆଲୁଅ ପାଇବାକୁ, କେହି ଉତ୍ତାପ ନେବାକୁ, କେହିବା ମତେ ଜାଳି ପାଉଁଶ କରିଦେବାକୁ।

ମୋ ପୋଡ଼ିବା ଜଳିବାର ଯନ୍ତ୍ରଣା ସହ ମୁଁ ବାରଂବାର ସେମାନଂକୁ ସମଭାଗୀ କରିବାର ପ୍ରୟାସ କରିଛି। ଅଥଚ ସେମାନଂକ ଯଂତ୍ରଣାକୁ ସହିପାରିନାହିଁ। ମତେ କେଂଦ୍ରକରି କାମ, କ୍ରୋଧ ଓ ଈର୍ଷାର ଦାବାଗ୍ନିରେ ଅହରହ ସଂତୁଳିତ ହେଉଥିବା କୁରୁକୁଳ ପାଇଁ ଗଭୀର ମର୍ମଦାହ ଭୋଗିଛି, ତାକୁ ରକ୍ଷା କରିପାରିନାହିଁ।

ନିଆଁର ତ ଏଭଳି ଅଦ୍ଭୁତ ଭାଗ୍ୟ ନେଇ ଜନ୍ମ ଯେ ସେ ନିଜକୁ ପ୍ରଥମେ ଜାଳିବ, ନିଜ ଆଧାରକୁ ଆଗେ ଧ୍ୱଂସ କରିବ। ନିଆଁ କେବଳ ପାଉଁଶକୁ ତା'ର ନିଜ ରୂପ ବୋଲି ଜାଣିବା ପରେ ହିଁ ନିରସ୍ତ ହେବ।

ମୋର କ୍ରୋଧାଗ୍ନିକୁ ନିମିତ୍ତମାତ୍ର କରି ତୁମେ ଯେ କୁରୁବଂଶ ବିନାଶର ମରଣାନଳ ପ୍ରଜ୍ୱଳିତ କରିଦେଲ, ସେ କ୍ରୋଧକୁ ମୋର ତେଜ ବୋଲି ମୁଁ କି ଅହଂକାର କରିଥିଲି ?

ସବୁ ପ୍ରଶ୍ନର ଶେଷ ସମାଧାନରେ ମୁଁ ଏବେ ପହଂଚିଯାଇଛି ସଖା ! ଜାଣୁଛି, ତୁମରି ଚକ୍ରାଂତରେ ସେମାନେ ଏବଂ ମୁଁ, ସମସ୍ତେ ସମସ୍ତଙ୍କ ପାଇଁ (କିଂବା କେବଳ ତୁମରି ପାଇଁ) ଗୋଟିଏ ପ୍ରୟୋଜନ ସାଧନରେ ଲାଗିଛୁ; ଆଉ ସେହି ସୂତ୍ରରେ ତୁମ ସହ ସଂଯୁକ୍ତ ହୋଇଛୁ।

ପାଣ୍ଡବମାନଙ୍କର ନିଜର ବିଚାରବୁଦ୍ଧି ଜ୍ଞାନ ସଂପର୍କରେ ଅହଂକାର ଆଉ କୌରବ ପକ୍ଷର ଅଜ୍ଞାନତାଜନିତ ଅହଂକାର, ଏ ଉଭୟ ମତେ କ୍ରମଶଃ ତୁମରି ଆଡ଼କୁ ଉତ୍ତୋଳିତ କରିଛନ୍ତି। ତୁମରି ହାତରେ ମୋ ନିଜ ଭାର ସମର୍ପିଦେବାର ବାଟ ଖୋଲିଦେଇଛନ୍ତି। ସବୁ ଦୁଃଖକଷ୍ଟ, ଅପ୍ରାପ୍ତି, ଅତୃପ୍ତି ସତ୍ତ୍ୱେ ମୋର ଏ ଯେଉଁ ବିଶେଷ ପ୍ରାପ୍ତି ଟିକକ, ଯାହା ମତେ ତୁମର ଅଧିକ ନିକଟତର, ପ୍ରିୟତର କରିଛି, ତାହାହିଁ ମତେ ସେମାନଙ୍କ ପାଖରେ ଏ ଜନ୍ମ ପାଇଁ କୃତଜ୍ଞ ରଖାଇଦେଇଛି।

ଅକ୍ଷମ ମାନବାତ୍ମା ଅପର ପାଇଁ ନିଜର ଆଗୋଚରରେ ବି କେତେ ସୁକଲ୍ୟାଣ ବିଂଚିଦିଏ !

ଭୀଷ୍ମ ଦ୍ରୋଣ ଆଦି ପରଂପରାର ଅଧୀନ।

ଦୁର୍ଯ୍ୟୋଧନ କର୍ଣ୍ଣ ଆଦି ଅନୀତିର ଅଧୀନ।

ଆଉ ପାଣ୍ଡବ ଭ୍ରାତୃବୃନ୍ଦ — ନିଜ ନୀତିବୋଧରେ ବିବଶ . . .।

ସେ ସମସ୍ତଙ୍କର ବିଚାର-ବିମୁଢ଼ତାର ଏ ଦୁର୍ବଳତାକୁ ସ୍ୱୀକାର ନକରି ସେମାନଂକୁ ତୁମଭଳି ସକଳ ଦ୍ୱାଂଦ୍ୱିକତାର ଉର୍ଦ୍ଧ୍ୱରେ ବିମୁକ୍ତ ପୁରୁଷୋତ୍ତମ ରୂପେ ବିବେଚନା କରିବାର ଅପରାଧ ମୁଁ କାହିଁକି କରିବି ?

ତା'ହେଲେ ନିଜର ଅପୂର୍ଣ୍ଣତାକୁ ବା ମୁଁ କାହିଁକି କ୍ଷମାଦେବି ?

ସେ ଅପୂର୍ଣ୍ଣତା ଟିକକ ତ ମୋର ବେଡ଼ି ହୋଇନଥିଲେ ମୁଁ ଆଜି ହିମାଳୟ ଧୂଳିରେ ବ୍ୟର୍ଥତାର ମୁହୂର୍ତ୍ତମାନଙ୍କୁ ସାଉଁଟି ନବସି ସଫଳତାର ସ୍ୱର୍ଗପଥକୁ ଆରୋହଣ କରିଚାଲିଥାନ୍ତି।

ମାତ୍ର ହେ କାଳୋତ୍ତୀର୍ଣ୍ଣ ! ଦେଶକାଳର ମୁହୁର୍ମୁହୁ କ୍ଷୟପ୍ରାପ୍ତ ଧରାରେ ସତ୍ୟ-ଧର୍ମ-ନ୍ୟାୟର ମିଳିତ ବିନ୍ଦୁ ଉପରେ ପ୍ରେମର ପ୍ରାଣନ୍ୟାସ ମନ୍ତ୍ର ଉଚ୍ଚାରଣ କରି ଅକ୍ଷୟ ଜୀବନକୁ ପ୍ରତିଷ୍ଠା କରିବାର ସଂକଳ୍ପରେ ଯଦି ତୁମେ ଅବତୀର୍ଣ୍ଣ ହୋଇଥାଅ, ତା'ହେଲେ ମଣିଷକୁ ଏପରି ଅକ୍ଷମ କାହିଁକି କଲ ? ପୃଥିବୀକୁ ଏବେ ଖର୍ବ କଲ ଯେ ସତ୍ୟଧର୍ମର ଦୁଇ ପାଦରେ ଠିଆ ହୋଇ, ନ୍ୟାୟ ଓ ମଂଗଳର ହାତ ଦୁଇ ପ୍ରସାରିଦେଇ ପରମପ୍ରେମକୁ ପରିପୂର୍ଣ୍ଣ ଆଲିଂଗନ ଦେବାର ଛାତି ପାତିଦେବାକୁ ଜୀବନ କେବେ ବି ସମର୍ଥ ହୋଇପାରୁନାହିଁ।

ପ୍ରେମ ବିନା ବଂଚିହୁଏ ସତ, ମାତ୍ର ଜୀବନର ପୂର୍ଣ୍ଣତା ମିଳେନାହିଁ। ଆଉ, ସତ୍ୟ-ଧର୍ମ-ନ୍ୟାୟ ଉପରେ ପ୍ରତିଷ୍ଠିତ ନହେବା ପର୍ଯ୍ୟନ୍ତ ସେ ବିକଳାଂଗ ପ୍ରେମକୁ ଜୀବନ ପୂର୍ଣ୍ଣପ୍ରାଣରେ ଗ୍ରହଣ ବି କରିପାରେନାହିଁ।

ଗୋଟାଏ ମିଳିତ ବିନ୍ଦୁ ଉପରେ ଏମାନଂକୁ ଏକାଠି ଏକ କରି ଦେଖିବି ବୋଲି ତ ସାରା ଜୀବନ ଯଂତ୍ରଣାରେ ଏମିତି ରିକ୍ତ ହୋଇଗଲି।

ମୁଁ ତେଣୁ ସତ୍ୟ, ଧର୍ମ, ନ୍ୟାୟ, ଅନ୍ୟାୟର ଆଉ କିଛି ବି ବୁଝୁନାହିଁ। ସବୁ ନୀତିଧର୍ମର ଭଲମଂଦର ବିଚାର ବିସର୍ଜିତ ଏ ମୋର ଜୀବନ-ଯାତ୍ରା ରାଜଅଂତଃପୁରରୁ ହିମାଦ୍ରି-ପ୍ରାଂତର ଯାଏ ତ କେବଳ ତୁମକୁ ହିଁ ଏକାଗ୍ର ଅନୁସରଣ।

ଏବେ କୌରବ ଶତଭ୍ରାତାଙ୍କୁ ମୁଁ କ୍ଷମା କରିଦେଇପାରିବି, ସେମାନେ ସତ୍ୟ-ଧର୍ମର କଠୋର ଅଗ୍ନିତାପ ନିକଟରେ ଦୁର୍ବଳ; ପାଂଡବ ପଂଚଭ୍ରାତାଙ୍କୁ ସହ୍ୟ କରିନେଇ ପାରିବି, ସେମାନେ ପ୍ରେମର ଶାଣିତ ଶଯ୍ୟାଧାର ଉପରେ ନିର୍ବଳ। ସେଇଥିପାଇଁ ତ ସେମାନେ ସତ୍ୟ-ଧର୍ମର ଅଗ୍ନିକୁଣ୍ଡରେ ବାରଂବାର ପ୍ରେମର ଶୁଦ୍ଧ କୋମଳତାକୁ ଆହୁତି ଦେଇଛନ୍ତି। ଉଭୟେ ଆତ୍ମସୁଖ ହରାଇଛନ୍ତି, ଅପରର ଦୁଃଖର କାରଣ ହୋଇଛନ୍ତି। ପ୍ରେମର କଠୋର ସୂର୍ଯବଳୟ ସମ୍ମୁଖରେ ଠିଆ ହେବାପାଇଁ ଆମର କାହାରି ଯେ ପଦ୍ମ-ସାମର୍ଥ୍ୟ ନାହିଁ, ସେଇ ଅକ୍ଷମତା ହିଁ ତୁମକୁ ଆମର ମିଳିତ ଉପହାର।

କେଡ଼େ ଅହଂକାରରେ ଭାବିଥିଲି, ଗୋଟାଏ ଲଂବା ସିଧା ଗାରରେ ତୁମ ପାଖେ ପହଞ୍ଚିଯିବି। ସେ ସିଧାଗାରଟାଇ ମୋର ଅହଂକାର ଥିଲା। ତୁମେ ତାକୁ ଠିକ୍ ବଂକାଇଦେଲ। ପ୍ରତି ବିନ୍ଦୁରେ ବାଙ୍କି ବାଙ୍କି ନିଜର ସବୁ ଔଦ୍ଧତ୍ୟ ହରାଇ ଶେଷକୁ ସେ ଠିକ୍ ଗୋଲ୍ ହୋଇଗଲା।

କିଂତୁ ଆଶ୍ଚର୍ଯ୍ୟ, ସବୁ ଶେଷ ହୋଇଯିବାର ମୁହୂର୍ତରେ ପୁଣି ଆରଂଭକୁ ଫେରିବାର ଦୁର୍ଭାବନା କରୁଥିବାବେଳେ ତୁମକୁ ଠିକ୍ ସେଇଠାରେ ଭେଟିବାକୁ ମିଳିଲା।

ସଖା, ଏବେଳେ ତୁମକୁ ମୋର କିଛି ଆଉ ପ୍ରଶ୍ନ ନାହିଁ। ତୁମେ ମତେ ଯେ ତୁମ ହସ୍ତର ଉତ୍ତପ୍ତ ଶଳାକା କରି ଯୁଗ-ସଂହାରର ଉଦାମ ମୃତ୍ୟୁ-ତାଣ୍ଡବ ରଚାଇଗଲ, ଆଉ ତୁମ ଓଠତଳର ମୁରଲୀ କରି ଜୀବନ-ସଂଗୀତ ବଜାଇଗଲ, ସେ ତାତି, ସେ ଜ୍ୱାଳା, ଆଉ ସେ ଗାନ ମାଧୁରୀଟି ବି ମୋର ଏକାଂତ ନିଜସ୍ୱ।

ଯାପରେ ମୋ ପାଦ ଉଠିବ କି ନା ଜାଣେନା। ବୁଜି ବୁଜି ଆସୁଥିବା ଆଖିପତା ନିବୁଜ ହୋଇଯିବା ଅପେକ୍ଷାରେ। ତଥାପି ସେ ପତାତଳର ଅଂଧାର ମତେ ତୁମକୁ ଠିକ୍ ଭେଟାଇଦେବ। ଏ ଅଦ୍ଭୁତ ଆଶାକୁ ମୁଁ ପ୍ରାଣରେ କେମିତି ଲାଭ କରିଛି ସେକଥା ତୁମକୁ ବି ବୁଝାଇପାରିବିନାହିଁ।

ଆକାଶଭରା ବିଶ୍ୱାସର ଅମୃତ-ଅଭିଳାଷ ନେଇ ଏ ପୃଥିବୀକୁ ଆସିଥିଲି। ପୃଥିବୀର କଣ-କଣ ବିଷ ତାକୁ ନିଶ୍ଚିହ୍ନ କରିଦେଇଛି। ଅତଳାଂତ ଏ ଯଂତ୍ରଣାର ସମୁଦ୍ର ଗର୍ଭରୁ ସୁଧାକଣା ଟୋପେ ଚାଖିବାର ଦୁରାଶା ତଥାପି ଏ ଜୀବନ ଛାଡ଼ିପାରୁନାହିଁ।

ସେଇ ଆଶା ଟିକକ ଛାତିତଳେ ଦିକ୍ ଦିକ୍ ଜଳୁଥିବା ପର୍ଯଂତ ଜନ୍ମ ଜନ୍ମାଂତର ଜୀବନର ଯାତ୍ରା ନିରର୍ଥକ ହୋଇଯିବନାହିଁ।

ଅନୁଭବମାନ ତ ଏତିକି ବୁଝାଇଦେଇଛନ୍ତି ଯେ ଶ୍ରଦ୍ଧା ହିଁ ଅମୃତ ଆଉ କପଟ ବିଷ। ଜୀବନର ସମୁଦାୟ ପାନ ଏଇ ଦୁଇ ରୂପରେ ସଂଘଟିତ।

ସଖା, ଆଶା ବିଶ୍ୱାସର ହାତ ଦୁଇଟି ମୋର ଉପରକୁ ଟେକିହୋଇଯିବ, ଆଉ ତୁମ ଭରସାର ହାତ ନଇଁଆସିବ। ସେଥିରେ ଅମୃତ ହିଁ ଭରିଯିବ। ବିଷ ଅମୃତ ହୋଇଯିବ।

ହୁଏତ ଦୁଃଖାଗ୍ନିରେ ପୋଡ଼ି ସିଦ୍ଧ ନହେଲେ ଜୀବନପାତ୍ର ଏ ଶ୍ରଦ୍ଧାମୃତକୁ ଧାରଣ କରିପାରେ ନାହିଁ।

ଆଉ ମୁଁ ଭାଂଗି ମିଳାଇଯାଉଛି ନା ପୋଡ଼ାମାଟିର ସହନଶୀଳତାରେ ଶକ୍ତ ହେଉଛି ତା ତୁମେ ଜାଣ।

ଆଶ୍ଚର୍ଯ୍ୟ ଯେ, ଅନାସକ୍ତ ଏ ପୃଥିବୀ ପାଇଁ ଏତେ ଆସକ୍ତି ଲବଣାକ୍ତ ଲୁହ ହୋଇ ଜୀବନ-ପାତ୍ରକୁ ଏମିତି କ୍ଷୟ କରିଯାଏ।

ପୃଥିବୀରେ 'କିଛି ନାହିଁ' ବୋଲି ଜାଣିଥିବା, ତା'ପରେ ପୃଥିବୀକୁ 'ସବୁକିଛି' ବୋଲି ଭାବିନେବା, ପାଇବାର ପଥ ସଂଧାନ କରିବା ଭିତର ଦେଇ 'କିଛି ନୁହେଁ' ବୋଲି ଆବିଷ୍କାର କରିବା ଏବଂ ସବୁ ଜାଣିବା ପରେ ମଧ୍ୟ 'କିଛି'ର ବାହାନାରେ ପୃଥିବୀରେ ତଥାପି ବଂଚି ରହିବା... ଏହାଠାରୁ ବଳି ବିଡ଼ଂବନା ଆଉ କ'ଣ ଥାଇପାରେ ?

ଧରାପୃଷ୍ଠର ପ୍ରଥମ ପବନ-କଣାଟିକୁ ଭିତରକୁ ଟାଣିବା ପରଠାରୁ ଶେଷ ନିଶ୍ୱାସ ପର୍ଯ୍ୟଂତ ମୁହୂର୍ତ୍ତ ମୁହୂର୍ତ୍ତ ହୋଇ ପ୍ରାଣବାୟୁ ଆସୁଥିବ ଯାଉଥିବ ଏବଂ ମୁହୁର୍ମୁହୁ ଜଣାଇଦେଉଥିବ ଏ ପୃଥିବୀରେ ମୋ ଛାତିର ପବନ ଟିକକ ମଧ୍ୟ 'ମୋର' ନୁହେଁ, ଯାହାକୁ ମୁଁ ଦଣ୍ଡେ ଘଡ଼ିଏ ଅଟକାଇଦେଇପାରିବି।

ସ୍ତର ପରେ ସ୍ତର ଖସିପଡ଼େ। ଅନାବରଣ ସତ୍ୟର ଏ ରୂପ-ଉଦ୍‌ଭାସ ପରେ ସବୁ ପ୍ରହସନର ରହସ୍ୟ ଭେଦ ହୋଇଯିବାର ଉଷ୍ଟୋଲ୍ଲାସ ପରେ ଜୀବନ ଆପଣା ପାଇଁ କେଉଁ ପଥ ସଂଧାନ କରିବ ?

ସେ ପଥ ସୁଖର କି ଦୁଃଖର – ସେକଥା ଆଉ କହିବି ନାହିଁ। କିଛି ଅଭିଜ୍ଞତା ଆଉ ଅନୁଭବ ପାଇଁ ତ ଏ ଧରଣୀରେ ଦେହ ଧାରଣ। ସୁଖ ଦୁଃଖ ତ କେବଳ ଚେତନାରୂଢ଼ ହେବାର ପାହାଚମାନ।

ଅନୁଭବମାନେ ତ ବୁଝାଇଦେଇଛନ୍ତି ଯେ ଦୁନିଆଁରେ ପ୍ରେମ ଛଡ଼ା ଆଉ କିଛି ଆଘାତ କରେନାହିଁ। ଭଲପାଇବାର ହୃଦୟ ନଥିଲେ ହିଂସା, ଦ୍ୱେଷ, କ୍ରୋଧ ଓ କ୍ରୂରତାର ଆଘାତ ଭୂମି ରହିପାରନ୍ତା ନାହିଁ।

ଆଉ ହୃଦୟକୁ ଆଘାତ ଦେବା କେବଳ ହୃଦୟର ପାଖଲୋକ ପକ୍ଷେ ହିଁ ସଂଭବ। ଆତ୍ମୀୟତାର ଲଂବିଲା ହାତ କେବଳ ଆତ୍ମୀୟତାକୁ ଛିଡ଼ାଇପାରେ। ହୃଦ୍ୟତାର ସଂପର୍କରେ ଜଣେ ଜଣକୁ ସ୍ପର୍ଶ କଲାପରେ ତା'ର ହୃଦୟକୁ ଛିନ୍ନ କରିପାରିବ। ହୃଦୟରେ ସମାସୀନ ହେଲେ ହେଁ ମର୍ମ-ସୁହୃଦ୍ ହୃଦୟକୁ ପଦାଘାତ କରିପାରିବ।

ତଥାପି ହୃଦୟରେ ପ୍ରେମର ନିଆଁ ଜଳି ରହିଥାଏ ବୋଲି ସବୁ କଠୋରତା, ନିଷ୍ଠୁରତା ଓ ହିଂସା ଦ୍ୱେଷ ଆପେ ଦିନେ ସେଥିରେ ଜଳି ଶେଷ ହୋଇଯାଆନ୍ତି। ନହେଲେ ତ ଏ ପୃଥିବୀକୁ ସେମାନେ କେବେଠାରୁ ପୋଡ଼ି ପାଉଁଶ କରିସାରନ୍ତେଣି।

ଅଂଗେ ଅନିଭୋଗ କରିଥିବା ଏଇ ସବୁ ଉପଲବ୍‌ଧିର ଭୂମିରେ ଏବେ ତ ଗୋଟିଏ ମହାସତ୍ୟକୁ ଭେଟୁଛି ଯେ, ଦୁନିଆଁରେ କିଛି ପ୍ରତିଦାନବିହୀନ ନୁହନ୍ତି। ହିଂସା ଦ୍ୱେଷ ଜ୍ୱାଳାମୟ ତୀକ୍ଷ୍ଣ ତୀର ହୋଇ ହୃଦୟକୁ ଜାଳିଦିଅନ୍ତି, ରିକ୍ତ କରିଦିଅନ୍ତି।

ସ୍ନେହ ପ୍ରେମ ବିମଳ ଆନଂଦ ହୋଇ ହୃଦୟକୁ ଫେରି ଆସନ୍ତି, ପୂର୍ଣ କରିଦିଅନ୍ତି। ପ୍ରସନ୍ନତା ଓ ନିରାନଂଦତା – ଏହାହିଁ ହୃଦୟର ସେ ଦ୍ୱିବିଧ ପ୍ରାପ୍ତି-ରୂପ।

ପ୍ରେମର ଆଉ ଭିନ୍ନ ପ୍ରତିଦାନ ଖୋଜି ବସିଲେ ବୁଝିବାକୁ ହେବ, ତାହା ହୃଦୟର ଦାନ ନୁହେଁ, ବାଣିଜ୍ୟ।

× × × ×

ପୃଥିବୀରେ ବଂଚିତ କ୍ଷୋଭର ସେ ମୁହୂର୍ତମାନ, ଦୁଃଖ ଆଘାତର ରକ୍ତାକ୍ତ ବିକଳ ଅନୁଭବମାନ ମତେ ବାରବାର ଜୀବନର କଳ୍ପିତ ପ୍ରାପ୍ତି-ସୁଖର ରୂପ ପାଖକୁ ଫେରାଇ ନେଇଛନ୍ତି। ସୂକ୍ଷ୍ମ ବାସନାର ବଜ୍ରଶକ୍ତିରେ ମତେ ପୃଥିବୀର ସ୍ଥୂଳଚେତନା ଭିତରେ ଧରିରଖିଛନ୍ତି। ସ୍ୱର୍ଗକୁ ଯିବାର ଲୋଭକୁ ହୃଦୟରେ ଧରି ମୁଁ ଯେ ସ୍ୱର୍ଗାରୋହଣର ବିଡ଼ଂବିତ ପ୍ରୟାସ କରିଛି। ପୃଥିବୀର ସେ ଚିରଂତନ ସ୍ୱର୍ଗଲୋଭ, ତା'ର ଉଦଗ୍ରତମ, ପ୍ରବଳତମ କାମନା-ରୂପ ବହୁଭାବେ, ବହୁରୂପେ, ବହୁଗୁଣେ ପାର୍ଥିବ ସୁଖମାନଙ୍କୁ ଭେଟିବାର କଳ୍ପପୁରୀ ସେ ମୋର କଳ୍ପିତ ସ୍ୱର୍ଗ। ପୃଥିବୀ ଛଡ଼ା ଆଉ କେଉଁଠି ତା'ର ସ୍ଥିତି ନାହିଁ, ଏବଂ ତାକୁ ପାଇବାର ଲୋଭମୁକ୍ତ ନହେବା ପର୍ଯ୍ୟଂତ ସ୍ୱର୍ଗଯାତ୍ରା ସଂଭବ ହୁଏନାହିଁ। ଅଥଚ ମୋର ସେ କଳ୍ପିତ ସ୍ୱର୍ଗସୁଖର ଯାବତୀୟ ଲୋଭାସକ୍ତି ଯେ ସାରା ଜୀବନ ଏ ପୃଥିବୀକୁ ଜାବୁଡ଼ି ଧରି ଅନ୍ୟମାନଙ୍କ ସହ ଛନ୍ଦି ବାନ୍ଧି ହୋଇଯାଇଛି। ଜୀବନରେ ପାଇବା ନ ପାଇବାର ସବୁ ଅନୁଭବମୂଳରେ ଅନ୍ୟମାନଙ୍କୁ ଠିଆ କରିଦେଇଛି। ଅନ୍ୟମାନଙ୍କୁ ଘେରି, ପାର୍ଥିବ ସଂପର୍କମାନଙ୍କୁ କେଂଦ୍ରକରି ଭାବ ଅନୁଭବରେ ଜଡ଼ିତ ରହିଛି। ମୋ ସୁଖ-ସ୍ୱପ୍ନକୁ ଆକାଶରେ ଗୁଡ଼ି କରି ଉଡ଼ାଇବାକୁ ଅନ୍ୟମାନଙ୍କୁ ଡ଼ୋରି କରିଦେଇଛି। ସେମାନଙ୍କ ଅସାମର୍ଥ୍ୟ ଅସଫଳତାରେ ନିଜର ପ୍ରାପ୍ତି ଅପ୍ରାପ୍ତିକୁ ମାପି ଦେଖିଛି। ଅନ୍ୟମାନଂକ ଜୀବନସ୍ରୋତରେ ନିଜକୁ ଜଡ଼ାଇଦେଇଛି, ଭସାଇଦେଇଛି, ଧୋଇହୋଇଯାଇଛି। ସେଇଥିପାଇଁ ଏ କଣ୍ଠରେ ଏତେ ଅଭିଯୋଗ, ପ୍ରାଣରେ ଏତେ କ୍ଷୋଭ। ସେମାନଙ୍କ ଜୟ ପରାଜୟ, ସୁଖ ଦୁଃଖ ସହ ଛଂଦିବାଂଧି ହୋଇପଡ଼ିଥିବା ମୋ ଅସହାୟ ସତ୍ତା ପାଇଁ ସ୍ୱର୍ଗର ମୁକ୍ତି-ସ୍ୱପ୍ନ କିପରି ସଂଭବ ହୁଅନ୍ତା ?

ମୋର ସୃଷ୍ଟିକାଳରୁ ତୁମପାଖକୁ ମୋର ଅନ୍ତରାତ୍ମା ଯେଉଁ ଯାତ୍ରାରଂଭ କରିଥିଲା, ତା'ର ପଥସଂଗୀତରେ କେବଳ ତୁମେ ନୁହଁ ମୁଁ ନୁହଁ, ପଥପାର୍ଶ୍ୱର ସବୁକିଛିକୁ ମଧ୍ୟ ମୁଁ ଅଂତର୍ଭୁକ୍ତ କରିଦେଇଛି। ସ୍ୱର-ଛଂଦ-ଲୟରେ ବୁଡ଼ିଯାଇଛି। କଥା ଓ ଭାଷାରେ ମଜ୍ଜିଯାଇଛି ଏବଂ କେବଳ ମୁଗ୍ଧ ନୁହେଁ, ଲୁବ୍ଧ ବି ହୋଇଛି। ପୁଣି କ୍ଷୁବ୍ଧ ବି ହୋଇଛି। ପଥପ୍ରାଂତ ଫୁଲଫଳରେ ଅଂଜଳି କେବଳ ପୂର୍ଣ କରି ନୁହେଁ, ଅଂଚଳ ଭରି ମଧ୍ୟ ଅତୃପ୍ତ ରହିଛି। ବଣବୁଦାରେ ହାବୁଡ଼ି ପଡ଼ିଛି ଓ କଣ୍ଟାକାଘାତକୁ ଭର୍ତ୍ସନା

କରିଛି। ଲୋଭ ଓ କ୍ଷୋଭରେ ବଂଧା ମୋର ଅତୃପ୍ତ ଅଶାଂତ ଅଂତରାତ୍ମା କେଉଁ ତୃପ୍ତି ଓ ଶାଂତିର ସ୍ୱର୍ଗପଥର ସଂଧାନ ପାଇପାରନ୍ତା ?

ମୋର ଅସଫଳ ସ୍ୱର୍ଗଯାତ୍ରାର ହେତୁ ମୋ ଭିତରେ କ୍ରୋଧ ଦ୍ୱେଷ ଉପଜାତ କରାଇଥିବା କୌରବକୁଳ ନୁହନ୍ତି। ମତେ ଏଠି ଏଇଭଳି ପରିତ୍ୟାଗ କରି ଛାଡ଼ିଯାଉଥିବା ପାଣ୍ଡବମାନେ ମଧ୍ୟ ନୁହନ୍ତି। କୌରବମାନଙ୍କୁ କାରଣ କରି ମୁଁ ପ୍ରତିହିଂସାରେ ଜଳିଛି। ପାଣ୍ଡବମାନଙ୍କୁ ହେତୁ କରି ମୁଁ କ୍ଷୋଭ ଓ ଗ୍ଲାନିରେ ସଢ଼ିଛି। ଆଜି କିନ୍ତୁ ମନେହେଉଛି ପ୍ରକୃତରେ ସେମାନେ କେହି ମୋର ଦୁଃଖର କାରଣ ନୁହନ୍ତି। ମୋର ଜଳିଯିବାର ଭାଂଗିଯିବାର ଦୁର୍ବଳତା, ଆତ୍ମରକ୍ଷା କରି ନପାରିବାର ଅସମର୍ଥତା ଯେ ମୋ'ରି ଭିତରେ ଲୁକ୍‌କାୟିତ, ତାହା ସେମାନେ ହୁଏତ ନିଜ ଅଜଣାରେ ମୋ'ପାଇଁ ଉଦ୍‌ଘାଟିତ କରିଗଲେ ମାତ୍ର।

ମୁଁ ନିଜକୁ ସ୍ୱର୍ଗକୁ ଉତ୍ତୋଳିତ କରିବାର ସାମର୍ଥ ଯୁକ୍ତ ହୋଇଗଲେ, ପ୍ରେମ ଓ ଉଦାରତାରେ ଭରିହୋଇଗଲେ, ପୃଥିବୀର ପଙ୍କ କାଦୁଅରେ ଲୋଟିହୋଇ ଯଂତ୍ରଣାର ଆର୍ତ୍ତନାଦ କରିବାକୁ ହେବନାହିଁ। ପୃଥିବୀ ପଙ୍କ-କାଦୁଅ ବୋଲି ମୋ ମୁହଁ ଛିଂଚାଡ଼ିବାକୁ ହେବନାହିଁ।

ନିଜର ଏ ଚରମ କୁରୂପତାକୁ ଭେଟିସାରିଲା ପରେ, ଦୀନତା ଓ ଅକ୍ଷମତାର ଏ ଉପଲବ୍‌ଧିର ଭୂମିରେ ଆଉ କାହା ବିରୁଦ୍ଧରେ କି ଅଭିଯୋଗ ବାଢ଼ିବି ?

ମଣିଷକୁ ଅସହାୟ, ଅସମର୍ଥ, ବିଚରା ବୋଲି କହିବାକୁ ତଥାପି ଇଚ୍ଛା ହେଉନାହିଁ। ସବୁ କ୍ଷୁଦ୍ରତା ସତ୍ତ୍ୱେ ବି ସେ ବିରାଟକୁ ଆସ୍ପୃହା କରିବାର ସାହସ କରିଛି। ପାର୍ଥିବ ନିଶ୍ଚେତନା ସତ୍ତ୍ୱେ ବି ଅପାର୍ଥିବ ଉନ୍ମୁଖତାରେ ସେ ଆକାଶ ପ୍ରଦକ୍ଷିଣ କରିବାକୁ ବ୍ୟାକୁଳ ହୋଇଛି। ନିଜର ସ୍ୱଳ୍ପ ସାମର୍ଥ୍ୟ ଭିତରେ ବି ପରମଶକ୍ତିକୁ ସେ ପ୍ରାଣପଣେ ନିଜ ଭିତରକୁ ଆବାହନ କରିଛି।

ହେ ସର୍ବାଂତର୍ଯାମୀ, ଅଂତର୍ଗତ ଏ ଆକୃତିର ମର୍ମ ମୂଳରେ ତୁମେ ଯେ ବିରାଜିତ, ତାହାହିଁ ମୋର ସ୍ୱର୍ଗ ସଂଧାନର ଶକ୍ତିମଂତ୍ର।

ପୃଥିବୀର ସୁଖମାନଙ୍କୁ ଆଉ ବାସନାର ଭୋଗ-ଭୂମିରେ ଲୋଡ଼ୁନାହିଁ। ଯଶ, ସମ୍ମାନ, ଗୌରବ, ଯାବତ୍‌ଚଂଦ୍ରାର୍କ ମୋର ବଂଶଧରମାନଙ୍କର ଏ ବସୁଂଧରା ଭୋଗ, ଏସବୁ ଆଉ କିଛି ମାଗୁନାହିଁ। ସାଂଗରେ ଧରି ଜନ୍ମ ହୋଇଥିବା ସଂସାରକୁ ତୁମ ପାଦତଳେ ସମର୍ପିଦେବା ଅପେକ୍ଷାରେ ମୁଁ ଏଇଠି ଆଖି ମୁଦିଦେଉଛି।

ହେ ଜୀବନେଶ, ଏହାପରେ ବି ଯଦି ଜନ୍ମାଂତର ଆସେ, ଜୀବନାଂତର ଆସେ, ତେବେ ଏ ଜନ୍ମରେ ପୃଥିବୀପାଖେ ହରାଇଦେଇଥିବା ମୋ ହୃଦୟକୁ ଯେପରି ପୂର୍ଣ୍ଣତର କରି ଲାଭକରିବି।

ଏ ଜନ୍ମରେ ନିଜର ଦୁର୍ବଳତାରୁ ଯେଉଁ ହୃଦୟକୁ ହରାଇବସି ଜୀବନଟାକୁ ବ୍ୟର୍ଥ ହୋଇଯିବାର ଦେଖିଲି, ଆଗାମୀ ଜନ୍ମରେ ସେଇ ହୃଦୟର ଶ୍ରଦ୍ଧା ବିଶ୍ୱାସର ପଥ ଦେଇ ଜୀବନର ସବୁ ଅଗମ୍ୟକୁ ମୁଁ ଯେମିତି ଅତିକ୍ରମ କରିଯିବି।

ଜୀବନର ଯଜ୍ଞପୀଠରେ ଶ୍ରଦ୍ଧା ବିଶ୍ୱାସର ମଂତ୍ରୋଚ୍ଚାରଣ କରି ହୃଦୟର ସବୁ ସୁଖ-ଦୁଃଖର ଅନୁଭବକୁ ଆଜି ତୁମ ପାଖେ ହବନ କରିଦେଉଛି।

ତୁମକୁ ସମର୍ପି ଦେବାଭଳି ଆଉ କିଛି ଯେ 'ମୋର' ବୋଲି ରହିନାହିଁ। ବାରଂବାର ପୃଥିବୀର ଲୋଭଦ୍ୱେଷ ବହ୍ନିରେ ମୋ ହୃଦୟର ମମତାକୋମଳ ସବୁଜିମା ପାଉଁଶ ହୋଇଯାଇଛି। ଭରା ଐଶ୍ୱର୍ଯ୍ୟର ରାଜପଥରେ ମଧ୍ୟ ମୁଁ ବଂଚନାର ତୁଚ୍ଛା ହାତରେ ବାଟ ଚାଲିଥିବା ଆଉ କେହି ନହେଲେ ବି ତୁମେ ଦେଖିଛ।

ବଂଚନାର ଆଘାତକୁ ପ୍ରତିଶର କରିପାରିନାହିଁ। ମାତ୍ର ପ୍ରତିରୋଧର ନିଷ୍ଫଳତାରେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଯିବା ବେଳେ ପୃଥିବୀ ପ୍ରତି ଅଶ୍ରଦ୍ଧା ଓ ଅବିଶ୍ୱାସରେ ମୁଁ ଭରିହୋଇଯାଇଛି।

ପୃଥିବୀ ବିଶ୍ୱାସର ମର୍ଯ୍ୟାଦା ରଖି ଜାଣିନାହିଁ ବୋଲି ମୁଁ ମୋ ବିଶ୍ୱାସକୁ ଯାହା ହରାଇବସିଲି !

ହୃଦୟ ଶ୍ରଦ୍ଧା ବିନା କିପରି ବଞ୍ଚିବ ? ବିଶ୍ୱାସ ବିନା କିପରି ନିଃଶ୍ୱାସ ମାରିବ ?

ମଣିଷକୁ ବିଚାର, ତା' ଉପରେ ଅଧିକାର ଓ ଅଭିମାନ ପ୍ରସଂଗକୁ ବାଦ ଦେଇ ଯେ ଏ ପୃଥିବୀକୁ ଭଲପାଇବାର ସାଧନା କରିବାକୁ ହୁଏ, ତାହା ଯେମିତି ମୋର ସେ ଜନ୍ମାଂତରର ତପସ୍ୟା-ରୂପ ହୁଏ !

ହେ ସଖା, ପରଜନ୍ମ ଯଦି ଦିଅ, ତେବେ ଏ ସୃଷ୍ଟିକୁ ଶ୍ରଦ୍ଧା ଆଉ ଜୀବକୁ ବିଶ୍ୱାସ – ଏତିକି ଯେମିତି ସେ ଜୀବନ ପାଇଁ ଚିରଂତନ ଅତୁଟ ହୋଇ ରହିଥିବ। ସେତିକି ତ ତୁମକୁ ମୋର ଉପଲବ୍ଧିର କ୍ଷେତ୍ର।

ତୁମ ଦାନର ବା କି ମର୍ଯ୍ୟାଦା ମୁଁ ଦେଇପାରିଛି ?

ତୁମଠାରୁ ପାଇବାର ହିସାବ ନିକାଶ କରିବାରେ ତ ମୋର ଦିନ ସରିଯାଇଛି। ଚିରଦିନ କେବଳ ତୁମ ହାତତଳେ ବଦ୍ଧାଂଜଳି ହୋଇ ବସିରହିଛି। ତୁମକୁ କେବେ କିଛି ଦେଇଥିବାର ମନେପଡୁନାହିଁ। ଥରେ ତୁମେ କାଣିଚାଏ ଶାଗପତ୍ରର ଅନୁଗ୍ରହରେ ମତେ କୃତାର୍ଥ କରିଦେଇଥିଲ। ମାତ୍ର ହେ ସଖା, ଏ ଜନ୍ମକୁ ସାର୍ଥକ କଲାଭଳି ତୁମକୁ ତ କେବେ କିଛି ଯାଚି ଦେଇନାହିଁ।

ତୁମଠାରୁ ପାଇବାକୁ ଆଉ କିଛି ବାକୀ ନାହିଁ। ଏ ବେଳେ ତୁମକୁ ବରଂ କିଛି ଯଦି ଦେଇପାରନ୍ତି . . . ।

ଅଥଚ ଆଜି ତ କେବଳ ସଂଚୟ ରୂପେ ଜୀବନର ଭରା ବିଷପାତ୍ରଟିକୁ ମୋର କରି ପାଇଛି।

ଅନୁଭବ-ସମୁଦ୍ରର ଅତଳାଂତ ଖୋଜି ଖୋଜି କ୍ଷୋଭ ଓ ସଂତାପର ବିଷକୁ ଜୀବନ ରୂପେ ଲାଭକରିଛି। ନିନ୍ଦା ଓ ଅପମାନର ଲୁହକୁ ଜୀବନ-ରସ ରୂପେ ଚିହ୍ନିଛି। ଦ୍ୱେଷ ଓ ଲାଳସାର ତୀବ୍ର ବାଡ଼ବାନଳରେ ଜୀବନ-ସମୁଦ୍ରକୁ ଉତ୍ତପ୍ତ ଦେଖିଛି। ହତାଶାର ଦୀର୍ଘଶ୍ୱାସରେ ଜୀବନର ଆକାଶକୁ ସଂତପ୍ତ ହୋଇଉଠିବା ବି ଦେଖିଛି।

ଏଇ ହଳାହଳଭରା ଜୀବନଟି ଛଡ଼ା ତୁମକୁ ଆଉ କ'ଣ ଅର୍ପଣ କରିପାରେ? କେତେ ଗ୍ଳାନି, କେତେ ଲଜ୍ଜା ମୋର ଏ ଅକ୍ଷମ ସମର୍ପଣରେ!

ତଥାପି ହେ ଜୀବନର ଘନିଷ୍ଠତମ! ଜୀବନସାରା ଲାଭ କରିଥିବା ଆଘାତ ଓ ଅବିଚାରର ସବୁ ବିଷାକ୍ତ ଶରକୁ, ପ୍ରଶଂସା ଓ ସ୍ତବଗାନର ସବୁ ଫୁଲହାରକୁ ଯେପରି ତୁମରି ପାଖରେ ବାଢ଼ିଦେଇପାରେ। ଶରାଘାତ ଯେପରି ମତେ ବେଦନା-ବ୍ୟାକୁଳ କରି ତୁମ ପ୍ରତି ପ୍ରାଣରେ ସଂଶୟ ଉପଜାତ ନକରେ। ଫୁଲହାର ଯେପରି ଲୋଭାସକ୍ତି ହୋଇ ମୋ ହାତ ପାଦକୁ ଛଂଦି ବାଂଧି ନ ପକାଏ।

ଏ ପାଦ ତୁମ ପାଖକୁ ଧାଇଁଯିବାକୁ, ଏ ହାତ ତୁମ ପାଇଁ ପ୍ରଣାମ-ଯୁକ୍ତ ହୋଇଯିବାକୁ ଏମିତି ଖୋଲା ରହିଥାଉ। ତୁମ ଅମୃତ ସ୍ପର୍ଶରେ ଏ ଗରଳଭାଣ୍ଡ ସୁଧା-ସମୁଦ୍ର ହୋଇଯାଉ।

ହେ କୃଷ୍ଣକାଂତ, କୃଷ୍ଣା ହୃଦୟର ସବୁ କଳା ଅଂଧାର ତୁମ ନୀଳୋଜ୍ଜ୍ୱଳତାରେ ଅବଲୁପ୍ତ ହୋଇଯାଉ।

ଅଂଧାରର ଏଇ ନିଘଂଚ ବେଳାରେ ସବୁ ଆଲୁଅ ଯେ ମିଛ ହୋଇଯାଆନ୍ତି, ରୌଦ୍ରଦଗ୍ଧ ମଧ୍ୟାହ୍ନ ବି ସେ ଅଂଧାରକୁ ପୋଛି ପାରୁନାହିଁ।

ସତ ମିଛ ବାରିବାକୁ ବେଳ ନାହିଁ। ଏ ମୁହୂର୍ତ୍ତଟାଇ ନିଜ ପାଖରେ ସତ୍ୟ। ଏ ବେଳର ଏଇ ଅଂଧାର, ଏଇ ଭୟଂକର ଶୂନ୍ୟତା ଅବିଶ୍ୱାସ୍ୟ ଭାବେ ସତ୍ୟ।

ଦ୍ରୌପଦୀର ମୁଦାଆଖି କି ଖୋଲାପତାର ଦୁନିଆଁରେ ଭିତର ବାହାର ସବୁ ଏକାକାର ହୋଇଯାଇଛି।

ଅଂଧାରର ଘନତମ କୋଣଟିରେ ଠିଆହୋଇଗଲାପରେ ଏବେ ଭାବୁଛି ହୁଏତ ଏହାହିଁ ଭବିତବ୍ୟ ଥିଲା। ଆଲୋକ ପାଇଁ ବ୍ୟାକୁଳତାକୁ ବୁଝିବା ଏଇ ଅଂଧାରର ଅସହ୍ୟତା ବ୍ୟତିରେକେ ମୋ ପକ୍ଷେ ସଂଭବ ହୋଇନଥାନ୍ତା।

ଏ ଅନ୍ଧାର ମରଣର କଳାରଂଗ ହୋଇଯିବ କି ତୁମର ନୀଳ ସମ୍ମୋହନ ପାଲଟିବ, ସେକଥା ହିମାଳୟ ତଳର ଦ୍ରୌପଦୀ କିଂତୁ ଜାଣେନା। ତା'ର ମୁଦିଲା ଆଖି ଭିତରୁ ନିର୍ନିମେଷ ଏକାଗ୍ରତା ଏକ ପରମ ଆଶ୍ରୟକୁ କେବଳ ଅପେକ୍ଷା କରି ରହିଛି।

ଆର୍ତ୍ତନାଦର ଧ୍ୱନିଗୁଡ଼ିକ କେଉଁ ଛନ୍ଦଯୁକ୍ତ କରି ଏକ ଲଳିତ ସଂଗୀତରେ ରୂପାନ୍ତରିତ କରିବ ସେ ଛନ୍ଦ ରହସ୍ୟ କେବଳ ତୁମେଇ ଜାଣ।

ସତେ କ'ଣ ଏଇ କଳା ଅଂଧାର ମୋର ସେ ନୀଳାଶ୍ରୟକୁ ବିଗ୍ରହମଂଡ଼ିତ କରି ମୋ ଆଖି ଆଗରେ ଆଣି ଠିଆ କରାଇଦେବ!

□ □ □

୧୯୮୪-୮୫
ବ୍ରହ୍ମପୁର-କଟକ

"ଓଡ଼ିଆ ସାହିତ୍ୟ ଏକାଡ଼େମୀ ମୁଖପତ୍ର 'କୋଣାର୍କ' – ଜୁନ୍ – ୧୯୯୨ ସଂଖ୍ୟାରେ ପ୍ରକାଶିତ।

# ବଜ୍ରଧରାର ଗାଥା

## ॥ ଏକ ॥

ଗୌତମ,

ପୃଥିବୀର ପରିଭାଷାରେ ତୁମେ ଗୋପାକୁ, ରାହୁଲକୁ ପରିତ୍ୟାଗ କରିଛ। ରାଜ୍ୟ ସଂସାର ବର୍ଜନ କରିଛ। ଜନ୍ମ-ସୂତ୍ରର, ସମାଜ-ସୂତ୍ରର, ହୃଦୟ-ସୂତ୍ରର ବନ୍ଧନକୁ ଅସ୍ୱୀକାର କରିଛ। ସର୍ବବିରାଗୀ ଶ୍ରମଣ ସାଜି ରାଗଅନୁରାଗର ଜୀବନ-ଲୀଳାକୁ 'ଅନସ୍ତିତ୍ୱ' କହି ଉଡ଼ାଇଦେଇଛ। ଗୋଟାଏ 'ନାହିଁ'ରେ ବିଶ୍ୱର ସକଳ କ୍ରିୟା ବ୍ୟାପାରକୁ ନିର୍ବାପନ କରିଦେଇଛ। ସବୁ 'ପୂର୍ଣତା' ଉପରେ ଶୂନ୍ୟତାର ମୋହର ବସାଇଦେଇ ସୃଷ୍ଟିକୁ ପ୍ରଶ୍ନବାଚୀରେ ରୂପାନ୍ତରିତ କରିଦେଇଛ।

ମୁଁ କିଛି ପାରିନାହିଁ। ସଂସାରକୁ ମିଛ କହିପାରିନାହିଁ। ମମତାକୁ ମାୟା ମଣିପାରିନାହିଁ। ସମ୍ବନ୍ଧକୁ ବନ୍ଧନ ଭାବିପାରିନାହିଁ। ଏଇ 'ପାରିନାହିଁ' ଟାଇ ମୋ ଜୀବନରେ ଏକମାତ୍ର ସତ୍ୟସିଦ୍ଧ, ତୁମର ନାସ୍ତିବାଚକତାର ଏକମାତ୍ର ପ୍ରତିଧ୍ୱନି, କାରଣ ମୁଁ ତୁମକୁ ଅସ୍ୱୀକାର କରିପାରିନାହିଁ। ଗୌତମ-ବର୍ଜିତ ଜୀବନକୁ ମାନିନେଇ ପାରିନାହିଁ। ପ୍ରେମରିକ୍ତ ପୃଥିବୀକୁ ପରିକଳ୍ପନା କରିପାରିନାହିଁ।

ସବୁ ଅସ୍ତିତ୍ୱର ଚିହ୍ନକୁ ଗୋଟି ଗୋଟି ନିର୍ବାପିତ କରିବାରେ ତୁମର ନିର୍ବାଣ ସାଧନା; ଆଉ 'କିଛି ନାହିଁ'ର ଅପରିମେୟ ଦିଗନ୍ତରେ ଗୋପା ପାଇଁ 'ସବୁ ଅଛି'ର ଧ୍ରୁବସନ୍ଧାନ।

ନାହିଁ କହିଦେଲେ କ'ଣ ସବୁ ନାହିଁ ହୋଇଯାଏ ?

ଆଉ, ଥିବାଟା କ'ଣ ଏଭଳି ଅସ୍ୱସ୍ତିକର ଯେ ଜୀବନଟା ସାରା ତାକୁ 'ନାହିଁ'ର ସାଧନାରେ ଅସ୍ୱୀକାର କରିବାକୁ ହୋଇଥାଏ ?

ଅସ୍ତିତ୍ୱର ଭାର ଯଦି ଦୁର୍ଭାର ହୁଏ, ତେବେ ଦୁର୍ବଳତା ତ ସତ୍ତାର ନିଜର। ଭାର ବହନ ଲାଗି ଅସାମର୍ଥ୍ୟ। ଯେଉଁ ଭାର ବହି ନହୁଏ, ତାହାହିଁ ଦେହକୁ ଦୋହଲାଇଦିଏ, ପାଦ ଟଳମଳ କରିଦିଏ। ଜୀବନ ଯେଉଁ ପ୍ରଶ୍ନର ଉତ୍ତରକୁ ଭେଟି ନପାରେ, ତାହାହିଁ ସମସ୍ୟାର ସଂକଟ ସୃଷ୍ଟି କରେ।

ଗୌତମ, ସେ ସାମର୍ଥ୍ୟର ଅହଂକାର ମୁଁ କରିପାରିବି ନାହିଁ ଜାଣେ। ଆଉ ମଧ୍ୟ ଜାଣେ ଯେ, ତୁମେ ଆପଣାର ଅସାମର୍ଥ୍ୟ ଓ ଦୁର୍ବଳତା ନିକଟରୁ ଆତ୍ମଗୋପନ କରିବା ପାଇଁ ହିଁ ରାତିର ଅନ୍ଧକାରରେ, ସମସ୍ତଙ୍କ ଆଗୋଚରରେ ପୃଥିବୀରୁ ପଳାତକ ସାଜିଛ। ହୁଏତ ନିଜର ସେ ଅସମର୍ଥ, ଅସହାୟ, କ୍ଷୋଭାକୁଳ ପ୍ରଶ୍ନ-ଅସ୍ଥିର ଚିତ୍ରରୂପକୁ ଦେଖିନେବା ପରେ ତୁମପାଇଁ ଆଉ କିଛି ଭିନ୍ନ ପନ୍ଥା ନଥିଲା।

ଯେଉଁ ଅସାମର୍ଥ୍ୟ ତୁମର କେବଳ ବ୍ୟକ୍ତିଗତ ଓ ଏକାନ୍ତ ନଥିଲା, ପୃଥିବୀର ଯେ ଅସମର୍ଥତାକୁ ତା'ର ସନ୍ତାନ ରୂପେ ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ହେବାକୁ ହୁଏ, ତାକୁ ଅତିକ୍ରମ କରିବା ପାଇଁ ପୃଥିବୀରୁ ଏଇଭଳି ମୁହଁ ଫେରାଇ ନେବାକୁ ହୁଏ ?

ଜୀବନର ସବୁ ଅନ୍ୱେଷଣର ଆରମ୍ଭ ଭୟରୁ ନା ପ୍ରେମରୁ ?

ମୁକ୍ତିର ଅନ୍ୱେଷଣ ବନ୍ଧନର ଭୟରୁ। ମାତ୍ର ବନ୍ଧନ କ'ଣ ଅଛି ସତରେ ଏ ପୃଥିବୀରେ ?

ଆଉ ଭୟ କ'ଣ ? ଆପଣାକୁ ହଜାଇଦେବା, ଅସ୍ତିତ୍ୱ ବିଲୋପର ଉଦ୍‌ବେଗ ? ଜନ୍ମର ଭୟ ମରଣକୁ, ପ୍ରେମର ଭୟ ବିଚ୍ଛେଦ, ଅଥଚ ତାହାହିଁ ସେମାନଙ୍କର ଅନିବାର୍ଯ୍ୟ ପରିଣତି। ତଥାପି ଜୀବନ ମୃତ୍ୟୁ-ଭୀତ, ଆଉ ତୁମେ ତା'ର ସେ ଭୟକୁ ଜୟ କରିବାକୁ ଗଲାବେଳେ ସମ୍ବନ୍ଧର ଭୟକୁ ସ୍ୱୀକାର କରିନେଲ। ମୋ'ପାଇଁ ମୃତ୍ୟୁଠାରୁ ଭୟଙ୍କର ବିଚ୍ଛେଦକୁ ବିଧାନ ରୂପେ ରଚନା କରିଗଲ।

ଗୋପା ବିଚ୍ଛେଦକୁ ସ୍ୱୀକାର କରିନେଇଛି। ଭୟ କରିନାହିଁ, ଯେହେତୁ ସେ 'ଭୟ' ତୁମ ଲକ୍ଷ୍ୟ-ସିଦ୍ଧି ପଥରେ ପୁଣି ବିଘ୍ନ ହୋଇ ଦେଖାଦେବ। ଗୌତମ, ମୁଁ ତୁମ ସହଚାରିଣୀ ହୋଇ ନପାରିଲେ ବି ଲକ୍ଷ୍ୟ-ସଙ୍ଗିନୀ ହୋଇପାରିବି ତ ! ମୁଁ ମଧ୍ୟ ସତ୍ୟର ସାଧିକା, ସଂସାରରୁ ଦୂରରେ ରହି ନୁହେଁ, ସଂସାର ଭିତରେ ତା'ର ସିଦ୍ଧି ରୂପ ଲୋଡ଼ିଛି। ସଂସାର ଯେ ଏତେ ବଡ଼ ସତ୍ୟ, ତାକୁ ବାଦଦେଇ ଜୀବନର କୋଉ ସାଧନା ପୂର୍ଣାଙ୍ଗ ହେବ ?

ଏ ପୃଥିବୀ କ'ଣ ମୁକ୍ତିର ସ୍ୱାଦ ଚାଖିବ ନାହିଁ ? ମୁକ୍ତିର ମଧୁରତାକୁ ସେ କିପରି ବୁଝିବ, ମୁକ୍ତି ଯଦି ବନ୍ଧନ ଭୟରେ ପୃଥିବୀରୁ ସବୁବେଳେ ପଳାୟନର ବାଟ ଖୋଜିବ ? ଗୌତମ, ଜୀବନ-ଧର୍ମର ନିର୍ବାପନରେ ନିର୍ବାଣ ନା ଜୀବନର ସହଜ-ଅଭିବ୍ୟକ୍ତି ପଥରେ ବିଘ୍ନ ରୂପେ ଉପଜାତ ହେଉଥିବା ଭୟମାନଙ୍କର ନିରସନରେ ନିର୍ବାଣ ? ନିର୍ବାଣ ସନ୍ଧାନ ପାଇଁ ଯେଉଁ ପାର୍ଥିବତାକୁ ତୁଚ୍ଛ ମଣି ବୈରାଗ୍ୟର ଗୋଡ଼ରେ ତାକୁ ଆଡ଼େଇ ଦେଇ ଯାଇଛ, ସେଇ ତୁଚ୍ଛତା ଯେ ଗୋପା ପାଇଁ ଅନୁରାଗର ଅନିର୍ବାଣ ମୁକ୍ତିମନ୍ତ୍ର ହୋଇଉଠିଛି, ଗୋପା ତାକୁ ଜୀବନ ପାଇଁ ଚରମ ଆହ୍ୱାନ ରୂପେ ଗ୍ରହଣ କରିଛି। ଜରା, ବ୍ୟାଧି, ମୃତ୍ୟୁ— ଏ ସବୁ କିଛି ଗୋପା ତୁମ ଭଳି ଭେଟିଛି। ଯନ୍ତ୍ରଣାକୁଳ ହୋଇଛି। ଆଉ ତୁମ ଭଳି ସେ ମଧ୍ୟ ଏସବୁର ନିରାକୃତିର ପଥ ସନ୍ଧାନ କରିଛି। ମାତ୍ର ଏ ସବୁକୁ ମିଛ, ଭ୍ରାନ୍ତି, ଅନସ୍ତିତ୍ୱ କହିପାରିନାହିଁ। ପୃଥିବୀକୁ

ଜୀବନ ଆସୁଥିବା ଯାଏ, ସତ୍ତା ରୂପଲାଭ କରୁଥାଏ ଯାଏ, କ୍ଷୁଦ୍ରରୁ ବୃହତ୍‌ର ସ୍ତରେ ସ୍ତରେ ଜୀବନର ପ୍ରତିପକ୍ଷମାନଙ୍କୁ ଆୟତ୍ତ କରିବାର ଶକ୍ତି ହାସଲ କରିପାରି ନଥିବା ଯାଏ, ଏହିଭଳି ଜରା, ବ୍ୟାଧି, ମୃତ୍ୟୁ, କାମନା, ବାସନା, ତୃଷ୍ଣା, ଦୁଃଖ ଯନ୍ତ୍ରଣାର ଅନୁଭବମାନଙ୍କୁ ଅନିବାର୍ଯ୍ୟତଃ ଭେଟିଚାଲିଥିବ। ସେମାନଙ୍କୁ ମିଛ ସାବ୍ୟସ୍ତ କରିଦେଲେ ଜୀବନର ପ୍ରତିଷ୍ଠା ସତ୍ୟର ଆଉ କେଉଁ ଭୂମିରେ ସମ୍ଭବ ହେବ ?

ଗୌତମ, ଯେଉଁ ସଂସାରକୁ ମିଛ ମାୟା, ଯେଉଁ ସମ୍ବନ୍ଧକୁ ବନ୍ଧନ କହି ତା'ରି ଅସ୍ୱୀକାରରେ ତୁମେ ନିର୍ବାଣର ପଥ ସଙ୍କେତ କରିଗଲ, ଗୋପା ସେଇ ସୃଷ୍ଟିକୁ, ସେଇ ସଂସାରକୁ ପୂର୍ଣ୍ଣ ସ୍ୱୀକୃତି ଦେବାର ଯାବଜ୍ଜୀବନ ସାଧନା କରିଛି। ସୃଷ୍ଟି ସହ ଯାହାର ଦେହର ସମ୍ବନ୍ଧ, ପ୍ରାଣର ସମ୍ବନ୍ଧ, ଆତ୍ମାର ସମ୍ବନ୍ଧ, ସୃଷ୍ଟି ସହ ଯିଏ ସର୍ବାଂଶରେ ଯୁକ୍ତ, ସର୍ଜନା ବିଧିରେ ଆତ୍ମବିସର୍ଜନର ଯନ୍ତ୍ରଣାକୁ ମଧ୍ୟ ଯିଏ ସୃଜନର ଆନନ୍ଦରେ ରୂପାନ୍ତରିତ କରି ପୃଥିବୀକୁ ଜୀବନ୍ୟାସ ଦିଏ, ପୃଥିବୀର ଅପାର୍ଥିବ ଉତ୍ତରଣକୁ ସଂଭାବନାମୟ କରିଦିଏ, ସୃଷ୍ଟିକୁ ଅସ୍ୱୀକାର କରି ସେ କେଉଁ ମୁକ୍ତି ଖୋଜିବାକୁ ଯିବ ଓ କାହିଁକି? ସୃଷ୍ଟି ବେଦନାକୁ ଅଙ୍ଗରେ ପ୍ରତ୍ୟକ୍ଷ ଭୋଗିଥିବା କେଉଁ ଅନୁଭବ ଏ ରୂପସୃଷ୍ଟିକୁ ମିଛ କହିପାରିବ ?

ଗୌତମ, ମୁଁ ଜନନୀ। ଜୀବନକୁ ଜନ୍ମର ରହସ୍ୟରୁ ଚିହ୍ନିଶିଖିଛି। ଶିଶୁ ଭିତରେ ସୃଷ୍ଟିର କେଉଁ ସଂକଳ୍ପ ରୂପନିଏ, କେଉଁ ରୂପ ଅଭିଳାଷ ଅଭିବ୍ୟକ୍ତି ଲୋଡୁଥାଏ, କେଉଁ ସଂଗୋପନ ଆବେଗ ସ୍ପନ୍ଦିତ ହେଉଥାଏ, ତାହା କ'ଣ ଜୀବନକୁ ଅସ୍ୱୀକାର କରି ବୁଝିହୁଏ ? ମୋର ମାତୃହୃଦୟ ଶିଶୁର ଚାହାଣିରେ ଯେ ଜୀବନର ଅନନ୍ତ ସମ୍ଭାବନାକୁ ଆବିଷ୍କାର କରିଛି। ଯୁଗଯୁଗର ସୃଷ୍ଟି କ୍ରିୟାକୁ ଏକ ଅନନ୍ତ ସୃଜନ ଅଭିମୁଖେ ସାଧନା-ତତ୍ପର ଦେଖିଛି।

ହୁଏତ ପୃଥିବୀ ତୁମପାଇଁ ଗୋପାର, ରାହୁଲର, କପିଳବାସ୍ତୁର ପୃଥିବୀ ଥିଲା। ଭୋଗର, ସମ୍ବନ୍ଧର ରୂପଚିହ୍ନ ଏଇମାନଙ୍କୁ ତୁମେ ଭବ-ବନ୍ଧନ ରୂପେ ପରିତ୍ୟାଗ କଲ। ମାତ୍ର ସମ୍ବନ୍ଧ ମାନେ ଯେ ବନ୍ଧନ ନୁହନ୍ତି, ମୁକ୍ତିର ସୃଷ୍ଟି ସହ ସଂଯୋଗ-ସେତୁ – ଏକଥା ଗୋପା ବିନା, ଜଣେ ନାରୀ ବିନା, ଆଉ କିଏ ପୃଥିବୀ ପାଖେ ଦେଇପାରନ୍ତା ?

ବିରୋଧରେ, ବିସର୍ଜନରେ ନୁହେଁ, ସ୍ୱୀକୃତି ଓ ସଂଯୋଗରେ ନାରୀର ମୁକ୍ତିସାଧନା। ନାରୀ ଜୀବନର ସବୁ ଆହ୍ୱାନକୁ ପ୍ରତିଷ୍ଠା କରିବା ପାଇଁ ମରଣକୁ ବରଣ କରେ। ବାରମ୍ବାର ମୃତ୍ୟୁର ଦ୍ୱାର ଖୋଲି ଜୀବନକୁ ପୃଥିବୀର ଆଲୋକ ଭିତରକୁ ଘେନି ଆସିବା ପାଇଁ ଦେହ ମନ ପ୍ରାଣର କଷ୍ଟ ସ୍ୱୀକାର କରିବାକୁ ସାହସ କରେ, ଯନ୍ତ୍ରଣା ଭିତରେ ବଞ୍ଚେ ଓ ସେ ବଞ୍ଚିବାଟାକୁ ଏକମାତ୍ର ଆନନ୍ଦମୟ ସତ୍ୟରୂପେ ଉପସ୍ଥାପିତ କରେ।

ସୃଜନର ଅଂଶହାରିଣୀ ବୋଲି ହିଁ ସୃଷ୍ଟିର ବାହାରେ ସତ୍ୟର ତପସ୍ୟାଭୂମି ସେ ଖୋଜେନାହିଁ। ଜୀବନର ସତ୍ୟକୁ ସବୁ ମୁହୂର୍ତ୍ତରେ ଅନୁଭବ କରୁଥିବା ହେତୁ

ସତ୍ୟର ସ୍ୱତଃସିଦ୍ଧତା ଭିତରେ ପ୍ରକାଶିତ ରୂପଜଗତ ପାଇଁ ତେଣୁ ତା'ର କିଛି ପ୍ରଶ୍ନ ନାହିଁ। 'କିପରି' ଓ 'କାହିଁକି' ଏଇ ପ୍ରଶ୍ନ କରିନାହିଁ ବୋଲି ତ ସେ ଘରଛଡ଼ା ହୋଇନାହିଁ। ସବୁ ପ୍ରଶ୍ନର ଉତ୍ତରକୁ ସାକାର ଭୂମିରେ ଦେଖିବାର ସହଜାତ ଶକ୍ତି ପାଇଥାଏ ବୋଲି ତ ସେ ସହଜ-ସାଧିକା। ବନ୍ଧନରୁ ମୁକ୍ତି ସାଧନା ନୁହେଁ। ନାରୀ କେବେବି ବନ୍ଧା ନୁହେଁ। କୌଣସି ବନ୍ଧନକୁ ଚିରନ୍ତନ ମାନେନାହିଁ ବୋଲି ତ ସେ ଛଟିବାଛି ହୁଏନାହିଁ। ସବୁ ବନ୍ଧନର ଅନ୍ତରାଳରେ ଆପଣାର ସ୍ୱାଧୀନ ସତ୍ତାର ମୁକ୍ତି ବିଳାସିନୀ ସେ; ମୁକ୍ତିର ସାଧନାସ୍ଥଳୀ ଖୋଜିବାକୁ ତେଣୁ ଅରଣ୍ୟବାସିନୀ ହୁଏନା। ଏ ପୃଥିବୀ ଯେ ଅରଣ୍ୟ, ଜୀବନ ଯେ ଜଞ୍ଜାଳ, ତା'ରି ରହସ୍ୟକୁ ପ୍ରତିପଦରେ ଉଦ୍‌ଘାଟିତ କରି କରି ଯିବାର ସତର୍କ ପଦପାତକୁ, ଏ ପଥରେ ତା'ର ଚେତନାର ସ୍ୱାଭାବିକ ସଂକୋଚନ ବିସ୍ତାର ଜନିତ ସ୍ଥିତିସ୍ଥାପକ ଗତିଛନ୍ଦକୁ ଦୁର୍ବଳତା, ଅବଳତା ବୋଲି ପୁରୁଷ ସାବ୍ୟସ୍ତ କରିବସୁଥିବା ବେଳେ ହୁଏତ ଜାଣେନାହିଁ ଯେ ତାହାହିଁ ନାରୀର ସବଳତା।

ଦେଖିବାକୁ ଗଲେ ତ ଘରର ଦେହଳୀ ଆଉ ସଂପର୍କର ଚାବିକାଠିରେ ଚିରବନ୍ଦିନୀ ନାରୀ। ସମାଜର ବନ୍ଧନ, ସଂପର୍କର ନିଗଡ଼, ଝାଟିମାଟି କୁଡ଼ିଆର ଅଡ଼ା ଭିତରେ ହେଉ ଅବା ମଣିମୁକ୍ତାର ଉଆସରେ ସୁନାତାଲା ଆଉ ହୀରାର ଚାବିରେ ହେଉ, ନୂପୁର ହେଉ ବା ଜଞ୍ଜିର ହେଉ, ପାଦ ଦୁଇଟି ସବୁବେଳେ ବନ୍ଧା। କେଉଁ ମୁହୂର୍ତ୍ତରେ ଭୁଲିବାର ଅବକାଶ ପାଏ ସେ ତାକୁ ବାନ୍ଧିରଖିବା ପାଇଁ ପୃଥିବୀର ଆପ୍ରାଣ ପ୍ରୟାସକୁ? ଆଉ ଆତ୍ମାର ଦେହବନ୍ଧନର ଚେତନାକୁ ସେ ବିସ୍ମୃତ ହେବ କିପରି?

ମାତ୍ର ବନ୍ଦୀଶାଳାକୁ ଗୃହାଂଗନ କରି ସଜାଇଦେବା, ଶୃଙ୍ଖଳକୁ ଅଳଙ୍କାରରେ ରୂପାନ୍ତରିତ କରିଦେବା ଯେ ମୁକ୍ତିର ହିଁ ଅତ୍ୟାଶ୍ଚର୍ଯ ଶକ୍ତି, ବନ୍ଧନର ଦୁର୍ବଳତା ନୁହେଁ, ସେ ପରୀକ୍ଷା ପୁରୁଷ ହୁଏତ ଦେଇପାରନ୍ତା ନାହିଁ, ସାମାନ୍ୟତଃ ବି ପାରନ୍ତା ନାହିଁ।

ସେଇଥିପାଇଁ ମିଛ ମାୟାର ଅପବାଦ ଲଦିଦେଇ ସେ ଆପଣାଠାରୁ ବି ପଳାୟନ କରେ। ଏ ଜଗତ ଯେ ମାୟା, ଏ ସଂସାର ଯେ ମିଛ, ଏ ଜୀବନ ଯେ ମନଭୁଲାଣିଆ, ଏହା ତ ପ୍ରତି ମୁହୂର୍ତ୍ତରେ ରୂପଧରି ନାରୀର ଆଖିଆଗରେ ଉଭା ହେଉଥାଏ। ତଥାପି ସେ 'ମିଛମାୟା' ରୂପ ଖେଳ ଭିତରେ ବି ସତ୍ୟର ଜଗତଟିକୁ ପ୍ରତିଷ୍ଠା କରିବାକୁ ପ୍ରାଣପ୍ରଣେ ଲାଗିଥାଏ। ନାରୀର ସେ ତପସ୍ୟା ଉପରେ ଏ ଜଗତର ପ୍ରତିଷ୍ଠା। ପୁରୁଷ ଘରକୁ 'ମାୟା' ଜ୍ଞାନକରି ବାହାରକୁ ଯାଏ। ଅଥଚ ଘରେ ମାୟା ନଥାଏ। ଘର ମାୟା ନୁହେଁ। ମାୟା ନିଜର ଅସମର୍ଥତା, ରୂପସୃଷ୍ଟିର ରହସ୍ୟଭେଦର ଅସମର୍ଥତା।

ନାରୀର ଏ ଜ୍ଞାନ ସ୍ୱତଃସିଦ୍ଧ। ସେ ଅବିଦ୍ୟା ନୁହେଁ। ନାରୀକୁ ଘେରି ପୁରୁଷର ଭାବଜଗତ ହିଁ ଅବିଦ୍ୟାର, ମାୟାର ଜଗତ।

ଅଥଚ ପୁରୁଷ ଦ୍ୱାରା 'ମାୟା' ବୋଲି ଉପେକ୍ଷିତା ହେଉଥିବା ନାରୀଟି ଯେ ଆପଣା ପାଖେ ମାୟାର ସକଳ ରହସ୍ୟ ଭେଦକରି ସାରିଛି। 'ମାୟାମୁକ୍ତି' ପାଇଁ ମାୟାର ରୂପ-ରହସ୍ୟ ଅନାବୃତ କରିବା ଯେ ପ୍ରଥମ ଆବଶ୍ୟକ ତା ସେ କରିସାରିଛି।

ରୂପ ସୃଷ୍ଟିର ଅନ୍ତରାଳସ୍ଥିତ ଅରୂପ ସତ୍ୟର ଯଥାର୍ଥ ପରିଚୟ ରୂପ-ଉପଲବ୍ଧିବିନା କିପରି ସମ୍ଭବ ହେବ ?

ସଂସାର କାହାରି ନୁହେଁ, ଏକଥା ନାରୀକୁ କିଏ ବୁଝାଇବ ? ସଂସାର କାହାରି ଜଣକ ପାଖେ ବନ୍ଧାପଡୁଥିଲେ, ଅଟକିଯାଉଥିଲେ, ସତ୍ୟର ପ୍ରକାଶ ଆଉ ସମ୍ଭବ ହୁଅନ୍ତା ନାହିଁ। ସୃଷ୍ଟିଲୀଳାର ପ୍ରୟୋଜନ ହୁଅନ୍ତା ନାହିଁ।

ଊର୍ଣନାଭ ଭଳି ତେଣୁ ସେ ନିଜ ଭିତରୁ ମୋହମାୟାର ଜଗତକୁ କାଢ଼ି ନିଜକୁ ତା'ରି ସମ୍ବନ୍ଧ-ସୂତ୍ରରେ ଘେରାଇଛି। ସେ ମାୟା-ସୃଷ୍ଟି ନୁହେଁ, ମାୟା ତା'ର ସୃଷ୍ଟି।

ପୁରୁଷ ନାରୀର ସୃଷ୍ଟି। ସେଥିପାଇଁ ସେ ମାୟାବଦ୍ଧ, ରୂପବଦ୍ଧ, ମୁମୁକ୍ଷୁ। ମାତ୍ର ଯିଏ ଅରୂପରୁ ରୂପ ସୃଷ୍ଟି କରି ମୁକ୍ତିକୁ ମାୟାର ଲୀଳାରେ ରହସ୍ୟାନ୍ୱିତ କରିଦିଏ, ତା'ର ମୁକ୍ତି ସନ୍ଧାନ କ'ଣ ?

ମୁକ୍ତି ପାଇଁ ନାରୀକୁ କେଉଁ ତ୍ୟାଗର ତପସ୍ୟା କରିବାକୁ ହେବ ? ତା'ର ସମଗ୍ର ଜୀବନ ତ ତ୍ୟାଗ ଆଉ ତପସ୍ୟା। 'ନିଜର' ବୋଲି କାହାକୁ ଜାଣିବାକୁ, ଧରିରଖିବାକୁ ଅବସର ପାଏ ସେ ? ଜନ୍ମଭୂମି, ଜନ୍ମାବଧି ସକଳ 'ନିଜର' ପରିଚୟ ଚିହ୍ନିତ ସହଜ ମମତାର ସୂତ୍ରକୁ ଛିନ୍ନକରି ଚିରଦିନ ଏକ ଅନାତ୍ମୀୟ ଆରୋପ ଜଗତକୁ ଯଥାର୍ଥ ବାସ୍ତବ ସମ୍ବନ୍ଧିତ କରିବାର ତପସ୍ୟାରେ ତା'ର ସମଗ୍ର ଜୀବନ ନିୟୋଜିତ। ଆତ୍ମୀୟତା ତା'ର ଆତ୍ମାର ସ୍ୱଗୁଣ, ଅନ୍ତରଙ୍ଗତା ତା'ର ଅନ୍ତଃସତ୍ତାର ସହଜ ପ୍ରକାଶ-ରୂପ ବୋଲି ତ ଆପଣା ପାଖେ ନିର୍ଦ୍ୱନ୍ଦ୍ୱ-ମୁକ୍ତ ସତ୍ତାଟି ବନ୍ଧନର ତପସ୍ୟା ଭିତରେ ପୃଥିବୀକୁ ଅପାର୍ଥିବତାର ଭବିଷ୍ୟତ ପାଇଁ ବଞ୍ଚାଇରଖେ।

ପୃଥିବୀର ସେ ଅପାର୍ଥିବ ଅଭିଳାଷକୁ, ଜଗତର ଆପଣାଠାରୁ ମୁକ୍ତିବ୍ୟାକୁଳତାକୁ ନାରୀ ଭଳି ଆଉ କିଏ ବୁଝିଛି, ସକ୍ରିୟ ସହଯୋଗ ଦେଇଛି ?

ସୃଷ୍ଟି ସହ ନାରୀର ସଂପର୍କ ପ୍ରତ୍ୟକ୍ଷ। ପୁରୁଷ ଅପ୍ରତ୍ୟକ୍ଷ, ପରବର୍ତ୍ତୀ ନାରୀ ତା'ର ଅଜାଣତରେ ବି ପାର୍ଥିବତାକୁ ସର୍ଜନା ଭିତରେ ସ୍ୱୀକୃତି ଦିଏ, ମୂଲ୍ୟ ଦିଏ, ଅପାର୍ଥିବତା ପାଇଁ ସଜାଡ଼ିଦିଏ। ସେଇଠାରେ ହିଁ ସୃଷ୍ଟି ବନ୍ଧନ ନହୋଇ ମୁକ୍ତି ହୋଇଯାଏ। ବୀଜର ମୁକ୍ତିବ୍ୟାକୁଳତା ଟିକକ ଫୁଲପାଖୁଡ଼ାରେ ସ୍ପଷ୍ଟ ଉନ୍ମୋଚିତ ହୋଇଯାଏ।

ନାରୀପାଇଁ ସୃଷ୍ଟିଲୀଳା ଏଣୁ କୌଣସି ଅଦ୍ଭୁତ ଅତ୍ୟାଶ୍ଚର୍ଯ୍ୟ ଯାଦୁକ୍ରିୟା ନୁହେଁ। ତାହା ଐଶୀବିଭୂତିର ମହାନ୍ ବିସ୍ମୟ ରହସ୍ୟ। ତା'ର ଲୀଳାମାଧୁରୀ ଆସ୍ୱାଦନ କରି ତାକୁ ସାର୍ଥକ କରିବାକୁ ସେ ବ୍ୟର୍ଥତାର ସବୁ ରୂପକୁ ଅଙ୍ଗରେ ପରଖିନିଏ। ଜୀବନରୁ ତଥାପି ମୁହଁ ଫେରାଏ ନାହିଁ, ବରଂ ମୃତ୍ୟୁର ପ୍ରତିରୋଧୀ ଶକ୍ତିକୁ ଜୀବନର ନବସୃଷ୍ଟି ମାଧ୍ୟମରେ ବ୍ୟର୍ଥ କରିଦିଏ। ତା' ପାଇଁ ଜୀବନ ହିଁ ମୁକ୍ତି, ମୃତ୍ୟୁ ଏକ ପ୍ରଶ୍ନବାଚୀ ମାତ୍ର।

॥ ଦୁଇ ॥

ଗୌତମ,

ଜରାରୋଗ ମୃତ୍ୟୁ ବିରୋଧରେ ତୁମେ କେଉଁ ଅମୋଘ ଶକ୍ତି ଅର୍ଜନ କରିଛ ମୁଁ ଜାଣେନାହିଁ। 'ଅନସ୍ତିତ୍ୱ' କହିଦେଲେ ପୃଥିବୀ ଜରାମରଣବ୍ୟାଧିହୀନ ହୋଇଯାଏ ନାହିଁ। ଜନ୍ମରୁ ମରଣ ଯାବତ୍ ଦେହମନ ପ୍ରାଣର ଦେହଳୀରେ ବନ୍ଧା ପଡ଼ିଥିବା ଏ ଜୀବନକୁ ଆପଣା ଉପଲବ୍ଧିର କ୍ଷେତ୍ରରେ ଯେ ଦେହମନ-ପ୍ରାଣଗତ ଅନିତ୍ୟତା ବୁଝିବାକୁ ହୁଏ, ପୃଥିବୀ ଛଡ଼ା ଆଉ କେଉଁ ସାଧନା-ଭୂମିରେ ତାହା ସମ୍ଭବ ହୁଅନ୍ତା ?

ତୃଷ୍ଣା, ବେଦନା, ନିର୍ବାଣ– ଏ ଶବ୍ଦମାନ ପୃଥିବୀ ଛଡ଼ା, ଦେହଛଡ଼ା ରୂପଗତ ବାସ୍ତବତା ବାହାରେ କେଉଁଠି କିପରି ଅର୍ଥାନ୍ୱିତ ହୁଅନ୍ତେ ?

ସୁଖ, ଦୁଃଖ, ବନ୍ଧନ, ମୁକ୍ତି– ସବୁ ଅନୁଭବ ତ ପୃଥିବୀକୁ ଘେରି, ବନ୍ଧନ ପୃଥିବୀ ସହ, ମୁକ୍ତି ବି ପୃଥିବୀ ପାଖରୁ।

ତେଣୁ ଦେହ, ମନ, ପ୍ରାଣ ତୁମ ପାଇଁ ମିଛ, ଭ୍ରାନ୍ତି, ଅନସ୍ତିତ୍ୱ ହେଲେବି ଗୋପା ପାଇଁ ଏମାନେ ବିଶେଷ ଅର୍ଥପୂର୍ଣ୍ଣ। ଗୌତମ, ଏମାନେ ନଥିଲେ ବନ୍ଧନ କ'ଣ ଓ ମୁକ୍ତି କାହାଠାରୁ ମୁଁ କିପରି ଶିଖିଥାନ୍ତି ? ଦେହ-ମନ-ପ୍ରାଣ ସହ ପୃଥିବୀର ସମ୍ବନ୍ଧକୁ ସ୍ତରେ ସ୍ତରେ ଆବିଷ୍କାର କରି ମୁଁ ମୁକ୍ତିର ଏଇ ମହାମଂତ୍ର ସଂଧାନ କରିଛି ଯେ, ପୃଥିବୀ ବନ୍ଧନ ନୁହେଁ, ବନ୍ଧନ ହୃଦୟ ବାନ୍ଧିହୋଇ ରହିବାର ସ୍ୱୀକୃତି ମାତ୍ର।

ଦେଖିଛି, ଦେହ-ମନ-ପ୍ରାଣ ସମସ୍ତେ ଆପଣାସୂତ୍ରରେ ପୃଥିବୀକୁ ଭୋଗ, ଅଧିକାର କରିବାକୁ ବ୍ୟଗ୍ର, 'ମୋର' କରିନେବାକୁ ଲାଳାୟିତ। ତାହାହିଁ ସେମାନଙ୍କର ବନ୍ଧନ। ପୃଥିବୀ ସତରେ କେବେ ବାନ୍ଧିରଖିବ ନାହିଁ। ବରଂ ଜୋର୍ କରି ଦିନେ ସବୁ ବନ୍ଧନ ବାହାରକୁ ଠେଲିଦେବ, ଦେହମନପ୍ରାଣ ସେତିକି ଆପଣାବାଟେ ବୁଝିବା ପାଇଁ ଏ ପୃଥିବୀର ବାନ୍ଧିରଖିବାର ଏତେ ସବୁ ଆୟୋଜନ। ଫୁଲଟିଏ, ଫଳଟିଏ, ଚାହାଣିଟିଏ, ଛୁଆଁଟିଏ, ଟିକେ ହସ, ପଦେ କଥା, ଅଳ୍ପରେ ବହୁତ କରି ବାନ୍ଧିରଖିବାର ଶକ୍ତି ଏ ପୃଥିବୀର ଅଛି ବୋଲି ଯେ ମନେହୁଏ, ତାହା ତ ମୁକ୍ତିର ଆପଣା ଶକ୍ତିକୁ ପରଖିନେବାର ପ୍ରତିଘାତ-ସ୍ଥଳ।

ସବୁ ବନ୍ଧନର ଦିନେ ଶେଷ ଅଛି। ଏଭଳି ବନ୍ଧନ ନାହିଁ ଯାହା ଚିରଦିନ ଜୀବନକୁ ପୃଥିବୀର ଖୁଣ୍ଟରେ ବନ୍ଧା ପକାଇ ଦେଇପାରେ। ନା ଘରଘାଟ ପ୍ରିୟ ପରିଜନ, ନା ଶତ୍ରୁମିତ୍ର ପ୍ରିୟ ଅପ୍ରିୟ– ଏ ପୃଥିବୀ ତା'ର ସର୍ବସ୍ୱ ଯାଚି ଦେଲେ ମଧ୍ୟ ମଣିଷ ପାଇଁ ଚିର ପ୍ରଲୋଭନ ହୋଇ ରହିପାରେ ନାହିଁ, ଚିରଦିନ ରୂପଝଲକରେ ଝଲସାଇ ଦେଇପାରେ ନାହିଁ। ସେକଥା ପୃଥିବୀର ଧୂଳିକଣା ଭିତରେ ଜଡ଼ିରହି ମୁଁ ଆବିଷ୍କାର କରିଛି। ଧୂଳିକଣାର ମୋହରେ ପଡ଼ିଛି; ସେ ସମ୍ମୋହକୁ ଭାଂଗିଦେବାର

ମନ୍ତ୍ର ବି ଯେ ତା'ରି ଭିତରେ ସ୍ପନ୍ଦିତ, ତା'ର ଉଚ୍ଚାରଣକୁ ଶୁଣିଛି, ପୃଥିବୀକୁ ଭଲପାଇ, ପୃଥିବୀର ପ୍ରେମ ଆବେଗରେ ବୁଡ଼ିରହି ତା'ଠାରୁ ମୁକ୍ତିର ମହାମନ୍ତ୍ର ଶୁଣିଛି।

ଏ ପୃଥିବୀରେ ନିଜର ହୃଦୟ ଛଡ଼ା ବନ୍ଧନ ଯେ କିଛି ନାହିଁ। ହୃଦୟ ପାଖରେ ଥରେ ବନ୍ଧା ପଡ଼ିଗଲେ ଜୀବନ ତେଣିକି ତ ଖୁଣ୍ଟବନ୍ଧା ଜୀବ ପରି ବନ୍ଧନରଜ୍ଜୁର ସୀମା ଭିତରେ ଆପଣାର ଚରାଭୂଇଁ ଆଦରି ପଡ଼ିଥିବ। ହୃଦୟ ତ ଜୀବନର ଏକମାତ୍ର ପରାଜୟ ଭୂମି, ଯେଉଁଠି ଜୀବନ ଆପଣା ପାଖେ ଦୁର୍ବଳ ଆଉ ପୃଥିବୀ ପାଖେ ଭୀତଶଙ୍କିତ।

ଜୟ ପରାଜୟର ଯୁଦ୍ଧଭୂମି ତ ସେଇ ଗୋଟିଏ। ଜୀବନ ହାରି ନତମୁଖ ହେବ କି ଦର୍ପିତ ଜୟଯାତ୍ରା ରଚନା କରିବ, ତାହା ସେହି ହୃଦୟ ହିଁ ନିର୍ଣ୍ଣୟ କରିବ।

ମୋହାସକ୍ତି ଓ ମୋହମୁକ୍ତି – ଉଭୟର ତୀର୍ଥସ୍ଥଳୀ ଏ ଧରଣୀ। ହୃଦୟ ତୀର୍ଥଯାତ୍ରୀ, ତୀର୍ଥ-ଦେବତା ପ୍ରେମ।

ପୃଥିବୀକୁ ଅସ୍ୱୀକାର କରିଦେଲେ ପ୍ରେମର ସାଧନାଭୂମି ଆଉ ରହିବ ନାହିଁ। ପୃଥିବୀକୁ ମିଛ ସାବ୍ୟସ୍ତ କରି ଈଶ୍ୱର କେମିତି ସତ୍ୟ ପ୍ରମାଣିତ ହେବେ? ଈଶ୍ୱରଙ୍କ ପାଇଁ ପୃଥିବୀ ତ ସତ୍ୟର ପ୍ରଥମ ଉପପାଦ୍ୟ, ଯେଉଁଠି ସେ ପ୍ରେମକୁ ସତ୍ୟର ଶେଷ ପ୍ରତିପାଦ୍ୟ ରୂପେ ନିର୍ଣ୍ଣୟ କରିବାକୁ ଚେଷ୍ଟା କରିଚାଲିଛନ୍ତି।

ସତ୍ୟକୁ ସ୍ୱୀକାର କଲେ ପ୍ରେମକୁ, ପୃଥିବୀକୁ, ଈଶ୍ୱରଙ୍କୁ ଅସ୍ୱୀକାର କରିହେବ ନାହିଁ।

ପୃଥିବୀ ଯେ ଭଲ ପାଏ, ଭଲ ପାଇ ଜାଣେ, ସେଇଥିପାଇଁ ତ ଜୀବନ ପୃଥିବୀର ସବୁ ପ୍ରେମର ପ୍ରତିଦାନ ସ୍ୱରୂପ ପୃଥିବୀକୁ ତା'ର ମୋହମୁକ୍ତିର ଭବିଷ୍ୟତଟିକୁ ସମ୍ଭାବିତ କରିଦେବା ପାଇଁ ଜନ୍ମଜନ୍ମାନ୍ତରର ସାଧକ-ସତ୍ତାର କ୍ଳେଶକୁ ଅଙ୍ଗୀକାର କରିନିଏ।

ପୃଥିବୀ ତା'ର ସୁଖଦୁଃଖଭରା ଜୀବନାନୁଭବ ଭିତରେ ଅହରହ ଯେ ପ୍ରେମର ସାଧନା କରିଚାଲିଛି, ସେ ପ୍ରେମ ତାର କ୍ଷୁଦ୍ରତା, ଖର୍ବତ୍ୱର ଗ୍ଳାନି-ପୀଡ଼ିତ, ସଙ୍କୁଚିତ। ତଥାପି ପୃଥିବୀର ତାହା ଯଥାସାଧ ପ୍ରକାଶ-ପ୍ରୟାସ। ଯୋଗୀଜନ ପ୍ରେମର ସେ ଆଦ୍ୟପ୍ରକାଶକୁ ରୂପାସକ୍ତି, ସ୍ଥୂଳ ବାସନା-ବିଳାସ କହିପାରେ। ପୃଥିବୀ ନିଜର ଆଧାର ସାମର୍ଥ୍ୟ ଭିତରେ ପ୍ରେମକୁ ଯେତିକି ଧରିରଖିବାକୁ ସମର୍ଥ, ସେଥିରେ ପ୍ରେମପୂର୍ଣ୍ଣ ଐଶ୍ୱର୍ଯ ପ୍ରକାଶ କିପରି ସମ୍ଭବ ହୁଅନ୍ତା? ତଥାପି ପୃଥିବୀ ତା'ର ଜନ୍ମାବଧି ପ୍ରେମର ଶାଶ୍ୱତତାକୁ ଯେ ଅଧିକାଧିକ କରି ପ୍ରକାଶ କରିବାରେ ପ୍ରାଣପଣେ ଲାଗିଛି, ଘାତ ପ୍ରତିଘାତ ଦୁଃଖ ଯନ୍ତ୍ରଣା ତ ସେଇ ପ୍ରୟାସର ସଂଗ୍ରାମ-ଚିହ୍ନ।

ମୁହୂର୍ତ୍ତକ ପାଇଁ ହେଉ ପଛେ, ଏ ମଣିଷ ମଣିଷକୁ କେତେ ମୂଲ୍ୟ ଦିଏ! ହୃଦୟ ହୃଦୟର ଅମୂଲ୍ୟତାକୁ କିଭଳି ଚିହ୍ନିନିଏ! ଆଖିର ଦେଖା, ଓଠର ହସ କ୍ଷଣକର ହେଉ ପଛକେ, ଜଣାଇଦିଏ ଜୀବନ ଧନ୍ୟ, ଜନ୍ମ ସାର୍ଥକ। ଏ ପୃଥିବୀକୁ ଆସିବାର ସବୁ ମୂଲ୍ୟ ଯେମିତି ସେଇ ଗୋଟିଏ ମୁହୂର୍ତ୍ତରେ ମିଳିଯାଏ। ତାହାହିଁ

ତ ମୁକ୍ତି। ପ୍ରଳୟ ଜୀବନ, ଅମରତ୍ୱ ଆଉ ଅଧିକ କ'ଣ ଦେଇପାରେ, ଯଦି ଗୋଟିଏ ମୁହୂର୍ତ୍ତର ପ୍ରେମାନୁଭବରେ ଜନ୍ମଜନ୍ମାନ୍ତର ସାର୍ଥକ ହୋଇଉଠନ୍ତି ?

ପୃଥିବୀରେ କିଛି ଚିରଦିନ ପାଇହୁଏ ନାହିଁ ବୋଲି ତ ମୁହୂର୍ତ୍ତକର ଏ ପାଇବାଟା ଏତେ ମୂଲ୍ୟବାନ୍। ପ୍ରେମ ଏଭଳି ସମ୍ମୋହନ-ସୁନ୍ଦର। ଜୀବନ ଏଭଳି ବ୍ୟଗ୍ର-ବ୍ୟାକୁଳ।

ଏଇ ଟିକେ ଟିକେ ପାଇବା ଛଡ଼ା, ଅପର ହୃଦୟରେ ଟିକେ ସ୍ଥାନ ଛଡ଼ା ଜୀବନକୁ ଆଉ ଅଧିକ କି ମୂଲ୍ୟର ସୌଭାଗ୍ୟ ଜୁଟିପାରେ ?

ଏଇଭଳି ମୁହୂର୍ତ୍ତମାନଙ୍କରେ ଜୀବନ ଯେ ଆପଣାପାଖେ ପରିତୃପ୍ତ ହୋଇଯାଏ। ଯାଚ୍‌ନା ନାହିଁ। ପ୍ରଶ୍ନ ନାହିଁ। ଏଭଳି ପୂର୍ଣ୍ଣ ଯେ ଆଉ ଶୂନ୍ୟସ୍ଥାନ ନାହିଁ। ଏଭଳି ବ୍ୟାପ୍ତ ଯେ ଆଉ ସୀମା ଚିହ୍ନ ନାହିଁ।

ପ୍ରେମର ପ୍ରକୃତ ଉପଲବ୍ଧି ବୋଧହୁଏ ଏଇଭଳି ଆରମ୍ଭ ହୁଏ। ଟିକି ଟିକି ମୁହୂର୍ତ୍ତର ଅତର୍କିତତାରେ। ଏକପାଖେ ବିଶାଳତା, ଅପରପାଖେ କ୍ଷୁଦ୍ରତା। ପ୍ରତି ମୁହୂର୍ତ୍ତରେ ଏକରୁ ଅନନ୍ତକୁ, ବିନ୍ଦୁରୁ ସିନ୍ଧୁକୁ ଟଣାଟଣି। ବିସ୍ତୃତି ଓ ସଂକୋଚ୍‌ନ, ସଂକୋଚ୍‌ନ ଓ ପ୍ରସାରଣ, ଗତିଛନ୍ଦର ଲୟନିବିଡ଼ ତାନ। ବେଳେ ବେଳେ ପୃଥିବୀ ଉଠିଯାଏ ତ ଆଉ ବେଳେ ବେଳେ ଆକାଶ ବି ନଇଁପଡ଼େ। ପୃଥବୀକୁ ଭରିଦେବାର ତୃପ୍ତିରେ ଆପେ ଜଳକଣାରେ ଭରିହୋଇଯାଏ।

ସେ ବର୍ଷାରେ ପୃଥିବୀର ମୁକ୍ତି, ଆକାଶର ବି।

ଗୌତମ, ଅସରନ୍ତି ମଧୁପ୍ରବାହକୁ ଛାତିରେ ଧରିରଖି ମଧ୍ୟ ଏ ପୃଥିବୀ ତା'ର ମଧୁରତାକୁ ଚାଖିପାରେ ନାହିଁ। ପାରେ କେବଳ ଆକାଶ। ବର୍ଷସାରା ନିଜକୁ ଜାଳି, ଜଳାଇ, ରୌଦ୍ରଦଗ୍ଧ ତପସ୍ୟାରେ ନିଜକୁ ଅଗ୍ନିସାତ କରାଇ, ଦିଗ୍‌ବିଦିଗ ତୃଷାନଳରେ ଭରିହୋଇ ସେ ସମୁଦ୍ରର ସଂଗୁପ୍ତ ମଧୁରତାକୁ ଆପଣାର ତପଃଭାଗ୍ୟ ରୂପେ ଲାଭକରେ।

ଆକାଶର ସେ ପ୍ରାପ୍ତି କିନ୍ତୁ ତା'ଠାରେ ସୀମାବଦ୍ଧ ରହିଯାଏ ନାହିଁ। କୋଣ କୋଣ ଭରା କଣା କଣା ଶୋଷର ଦାବୀକୁ ଶାନ୍ତ ଶୀତଳ କରି, ନିଜର ତୃପ୍ତିକୁ ପ୍ରାପ୍ତି ସ୍ୱୀକୃତିକୁ ପୁଣି ଥରେ ପୃଥବୀକୁ ଆଶୀର୍ବାଦ ରୂପେ ପଠାଇଦିଏ।

ତପସ୍ୟାର କଷ୍ଟ-କ୍ଲେଶ ଆକାଶର, ତଥାପି ତପସ୍ୟାର ଫଳକୁ ସେ ପୃଥିବୀ ସହ ଭାଗବାଣ୍ଟି ଭୋଗକରେ।

ଗୌତମ, ତୁମ ସାଧନା ତ ବ୍ୟକ୍ତିଗତ ନିର୍ବାଣ ନୁହେଁ। ତୁମେ ଯେ ମଣିଷ ଜାତିର ଅସାମର୍ଥ୍ୟକୁ, ଦୁର୍ବଳତାକୁ ନିଜର ମାନିନେଇଥିଲ ବୋଲି ଯୁଗଯୁଗର ମାନବାତ୍ମା ପାଇଁ ମହାମୁକ୍ତିର ସକଳ ସାଧନା ସିଦ୍ଧ କରିଦେଲ। ପୃଥିବୀକୁ ମୁକ୍ତିସିଦ୍ଧା ହେବାର ସାମର୍ଥ୍ୟ ଦାନ କରିଦେଲ।

ଜନ୍ମ ଜନ୍ମ ତପସ୍ୟାର ପୁଣ୍ୟଫଳ ତୁମେ ଏ ଧରିତ୍ରୀର। ତୁମକୁ ସମଗ୍ର ପୃଥିବୀ ସହ ଏକାତ୍ମ ହେବା ପରେ ହିଁ ଲାଭକରାଯାଏ।

॥ ତିନି ॥

ସିଦ୍ଧାର୍ଥ, ପୃଥିବୀକୁ ସତରେ ପରିତ୍ୟାଗ କରିଥିଲେ ତୁମେ ପୁଣି କାହିଁକି ତା'ର ପରିତ୍ରାଣ ପାଇଁ ବ୍ୟାକୁଳ ହୋଇ ଜ୍ଞାନ ପ୍ରଚାର କରିବାକୁ ଫେରିଆସିଲ? ପାର୍ଥିବ ଦୁଃଖ ପାଇଁ ଯେଉଁ ଆକୁଳତା ଟିକକ ତୁମକୁ ଘରଛଡ଼ା କରିଥିଲା, ବିଶ୍ୱକରୁଣା ହୋଇ ତାହାହିଁ ତ ତୁମ ହୃଦୟକୁ ପୁଣି ପୃଥିବୀକୁ ଫେରାଇଦେଲା! ପୃଥିବୀକୁ ସ୍ୱୀକାର କରିନଥିଲେ ପୁଣି କାହିଁକି ତା ପାଖକୁ ଫେରିଆସିଲ? ପୃଥିବୀକୁ ଅପାର୍ଥିବ ସାଧନାର ରହସ୍ୟ ବୁଝାଇବସିଲ?

ଗୌତମ, ତୁମର ସାଧନା ବୋଧହୁଏ ଜୀବନର କଳାଦାଗକୁ ଅସ୍ୱୀକାର କରିବା, ଆଉ ମୋ ପାଇଁ, ସେ କଳା ବୋଲିହୋଇ ଦାଗ ପୋଛି ଶିଖିବା। ତୁମେ ତୁମ ଉତରଣ ଚେତନାର ସେଇ ଶୀର୍ଷରେ ସମାସୀନ, ଯେଉଁଠି କଳାର କାଳିମା କଥା ବୁଝାସରିଛି। ତାକୁ ଉପେକ୍ଷା କରିବା ତୁମ ପକ୍ଷେ ସହଜ; କାରଣ ସେ ତୁମକୁ ଆଉ ଲିପ୍ତ କରିବ ନାହିଁ।

ମାତ୍ର ମୁଁ, ମୋ ପାଇଁ ସେ କଳାକୁହେଲି ଅପେକ୍ଷା କରି ରହିଛି, ତା' ଭିତରେ ନ ପଶିଲା ପର୍ଯ୍ୟନ୍ତ ବାହାରିବାର ବାଟ ମୁଁ ପାଇବି ନାହିଁ।

କେତେ କୁତ୍ସିତତାକୁ ଭେଟିବା ପରେ ପୃଥିବୀକୁ ସୁନ୍ଦର ଦେଖିହୁଏ! କେତେ ବିସ୍ୱାଦ ତୀବ୍ରତାକୁ ଚାଖିବା ପରେ ପୃଥିବୀକୁ ମଧୁର ଅନୁଭବ କରିହୁଏ!

ତୁମେ ତେଣୁ ଅନାୟାସରେ ପତ୍ନୀ ପୁତ୍ର ରାଜ୍ୟସମ୍ପଦକୁ ଉପେକ୍ଷା କରିଯାଅ ଆଉ ମୁଁ ଉପେକ୍ଷିତାର ଜୀବନକୁ ଆଦରିନେଇ ଘୋର ସଂସାର ଭିତରେ ସନ୍ନ୍ୟାସିନୀର ସାଧନାରୂପ ସଂଧାନ କରେ।

ମୋ ଭିତରେ ଯେଉଁ ମୁକ୍ତିର ସାଧନା ଅବ୍ୟାହତ, ତାହା ଯେ ତୁମକୁ ଘେରି। ତୁମ ପାଇଁ ସକଳ ବନ୍ଧନ ପ୍ରତୀକ ଗୋପା– ପରିତ୍ୟକ୍ତା; ଆଉ ମୋ ପାଇଁ ଶାଶ୍ୱତ ସତ୍ୟର ପାର୍ଥିବ ରୂପାନ୍ତର ସିଦ୍ଧାର୍ଥ ଗୌତମ– ଉପାସ୍ୟ।

ଅପାର୍ଥିବ ସତ୍ୟକୁ ରୂପଧାରୀ ହୋଇ ପୃଥିବୀରେ ଆତଯାତ ହେଉଥିବାର ଦେଖିବା ତ ନାରୀର ସାଧନା। ଗୌତମ, କହିବାରେ ହୁଏତ ଧୃଷ୍ଟତା ହେଉଛି, କିନ୍ତୁ ମୋର ମନେହୁଏ ଯୋଗୀ ପୁରୁଷର ବିରାଗୀ ମନ ଈଶ୍ୱରଙ୍କୁ କେବଳ ନିରୋଳା ଈଶ୍ୱର ରୂପେ ଖୋଜେ ଓ ହୁଏତ ପାଏ। ସେ ଈଶ୍ୱର ତା'ର ଭାଇବନ୍ଧୁ ପିତାମାତା କେହି ନୁହନ୍ତି ଓ କେହି ତା'ର ଈଶ୍ୱର ନୁହଁନ୍ତି ଏବଂ କେହି ହେଉନଥିବା ସେହି ଈଶ୍ୱର ହିଁ ତା ପାଇଁ ଏକମାତ୍ର ଈଶ୍ୱର, କିମ୍ବା ସିଏ ନିଜେ ଏକା ଈଶ୍ୱର।

ଅଥଚ ଗୌତମ, ଈଶ୍ୱରଙ୍କୁ କେତେ ରୂପେ ଭେଟିବାକୁ ହୁଏ? ମାଆ ଛାତିରୁ ମୃତ୍ୟୁର କୋଳ ପର୍ଯ୍ୟନ୍ତ କେତେ ସ୍ପର୍ଶରେ ଚିହ୍ନିବାକୁ ହୁଏ? ସ୍ୱାମୀଠୁ ସଂତାନ ଯାଏ କେତେ ବାଟେ ପାଇବାକୁ ହୁଏ? ପରିଜନରୁ ପ୍ରିୟଜନ କେତେ ରୂପେ ଦେଖିବାକୁ ହୁଏ?

ନାରୀର ଜୀବନ ତ ଏକ ଅନନ୍ତ ସାଧନା। ଈଶ୍ୱରଙ୍କୁ ସେ ସବୁରୂପେ ଚିହ୍ନି ପୁଣି ଶେଷରେ ତାଙ୍କର ଏକାନ୍ତ ନିରାଲମ୍ବ ଐଶ୍ୱରିକ ରୂପକୁ ମଧ୍ୟ ଭେଟିଥାଏ। ସବୁ ରୂପର ସାକ୍ଷାତକାର ଓ ସବୁ ସଂବନ୍ଧର ସ୍ୱରୂପ ବାହାରେ କେବଳ ଆତ୍ମାର ସ୍ୱତନ୍ତ୍ର ସଂପର୍କରେ ଭେଟେ।

ଜନ୍ମରୁ ମରଣ ଯାଏ ଈଶ୍ୱରଙ୍କ ଆଡ଼କୁ ତ ଜୀବନ ମୁହାଁଇଥାଏ ନା!

ଏ ଜୀବନ ଯେ ପ୍ରେମ-ମନ୍ଦିର, ପ୍ରେମ ସାଧନାର ମୂଲ୍ୟ ଦେଇ ଜାଣେ, ସେ ରହସ୍ୟ ମୁଁ ତୁମରିଠାରୁ, ଆମରି ସଂବନ୍ଧ ସୂତ୍ରରୁ ଲାଭକରିଛି। ହୁଏତ ତୁମେ ଅଜାଣତରେ ମୋର ଅପୂର୍ଣତାକୁ ବୁଝିନେଇଛ। ମୋତେ ପୂର୍ଣ କରି ଭଲପାଇବା ତଥାପି ତୁମ ପକ୍ଷେ ସମ୍ଭବ ହୋଇଛି।

ପ୍ରେମ ଯେ ସବୁ ଅସମ୍ପୂର୍ଣତାକୁ ପୂର୍ଣ କରିଦିଏ, ସେ ପ୍ରେମ ହିଁ ମୁକ୍ତି, ସ୍ୱୟଂ ଈଶ୍ୱର! ପ୍ରେମର ସେ ଆଶ୍ଚର୍ଯ ରୂପକୁ ଦେଖିସାରିବା ପରେ, ପ୍ରେମକୁ ଈଶ୍ୱର ବୋଲି ଜାଣିସାରିବା ପରେ, ଗୋପା ଆଉ କେଉଁ ବନ୍ଧନର ଭୟ କରିବ?

ବିଶାଳ କେବେ କ୍ଷୁଦ୍ରକୁ ପରିତ୍ୟାଗ କରିବ ନାହିଁ। ଅସୀମ ସୀମାକୁ ଛାଡ଼ିଦେବ ନାହିଁ। ଈଶ୍ୱର ଜୀବକୁ ଭୁଲିଯିବେ ନାହିଁ। ପ୍ରେମ ଉଭୟଙ୍କୁ ଠିକ୍ ଏକାଠି ରଖିନେବ। ଆଉ କ୍ଷୁଦ୍ରତାକୁ, ସଂକୋଚନକୁ ଆପଣା ଶକ୍ତିରେ ପୂର୍ଣତା ଆଡ଼କୁ ପ୍ରସାରିତ କରିନେବ।

ପ୍ରେମର ପରିପୂର୍ଣତା ଭିତରେ ମୁଁ ଆପଣା ପାଖେ ପୃଥିବୀର ବନ୍ଧନମୁକ୍ତ ହୋଇଯାଇଛି। ପୃଥିବୀକୁ ଭଲପାଇବା ଭିତରେ, ପୃଥିବୀର ଭଲପାଇବାକୁ ସ୍ୱୀକାର କରିନେବା ଭିତରେ, ତା'ର ସମସ୍ତ ଅପୂର୍ଣତା, ସୀମା-ଦୈନ୍ୟକୁ ଆପଣାର କରିଛି। ପୂର୍ଣତାର ପଥରେ ତା'ର ଯାତ୍ରା ଉଦ୍ୟମକୁ ସ୍ୱାଗତ କରିଛି, ସହଯୋଗ କରିଛି, ସଂବନ୍ଧରେ ବନ୍ଧନର ଗଣ୍ଠି ହୁଗୁଳାଇଦେଇଛି।

ସଂବନ୍ଧମାନେ ଜୀବନର ଗଣ୍ଠିବନ୍ଧନ ନୁହନ୍ତି। ପ୍ରେମର ସଂବନ୍ଧ ଭିତରେ ମୁଁର ଗଣ୍ଠି ହୁଗୁଳିଯାଏ। ନିଜଠାରୁ ଅପରକୁ, ଏକରୁ ବହୁକୁ ନିଃସାରଣ ହୁଏ। ପ୍ରେମର ବିସ୍ତୃତ ଆକାଶରେ ହୃଦୟର ଅବାଧ ଲୀଳାଖେଳା ଘଟେ। ସିଦ୍ଧାର୍ଥ, ଏ ସତ୍ୟ ତ ମୁଁ ଆମରି ସଂବନ୍ଧସୂତ୍ରରୁ ଲାଭକରିଛି।

ତୁମେ କ'ଣ ଜାଣିଥିବ ଯେ ତୁମ ଅର୍ହତ୍-ପ୍ରାପ୍ତିର ବହୁପୂର୍ବରୁ, ଆମ ସଂପର୍କର ଆରମ୍ଭ ଦିନରୁ ତୁମେ ମୋର ମନ୍ତ୍ରଗୁରୁ ରୂପେ ତୁମ ଅଲକ୍ଷ୍ୟରେ ମଧ୍ୟ ମୋ ମୁକ୍ତିର ପଥ ସର୍ଜନା କରିଦେଇଛ! ମୋ ଭିତରୁ ତୁମଠାକୁ ଯେ ମୋର ଭାବଃସରଣ, ମୋର ପ୍ରଥମ ଆତ୍ମବିସ୍ମରଣ, ସେଇ ତ ମୋର ପ୍ରଥମ ମୁକ୍ତିସ୍ୱାଦ।

ତୁମଠାରେ ମୋର ଆପଣାତ୍ୱ ବିସର୍ଜନ – ଦେହର, ମନର, ପ୍ରାଣର – ସାମାନ୍ୟରୁ ସାମଗ୍ରିକ। ଆଉ ମିଳନର ଯେଉଁ ମୁକ୍ତି ସାମୟିକ, ବିଚ୍ଛେଦରେ ତ ତାହା ଚିରନ୍ତନ ଅପ୍ରତିହତ ହୋଇଗଲା।

ଆତ୍ମବିସ୍ମୃତି ପଥରେ ତୁମର ସ୍ମୃତିମଗ୍ନ ମୋର ସତ୍ତା 'ମୁଁ'ର ପରିଚୟକୁ ହଜାଇଦେଲା।

ତୁମ ଅବର୍ତ୍ତମାନତାର ସବୁ ମୁହୂର୍ତ୍ତକୁ ଯେ ମୁଁ ତୁମପାଇଁ ଉତ୍ସର୍ଗ କରିଦେଇଛି। ତୁମେ ନାହଁ, ଏଭଳି ସମୟ କ'ଣ ମୋ ପାଇଁ ଅଛି? ମିଳନ, ବିରହ, ରୋଷ, ଅଭିମାନ ବହୁ ଭାବାନୁଭବରେ ରାଗରଞ୍ଜିତ ଏ ହୃଦୟକୁ ମୁଁ ତୁମରି ରୂପାଧାରରେ ହିଁ ଏକାଗ୍ର, ଲୟନିବିଡ଼ ରଖିଦେଇଛି।

ଗୌତମ, ମୁକ୍ତି କ'ଣ? ଏକରୁ ବହୁ ପ୍ରସାରଣ! ନିର୍ବାଣ କ'ଣ? ବହୁର ଏକରେ ନିର୍ବାପନ? ତୁମେ ଯିବା ପରେ ମୁଁ ଦିନ ଦିନ ଧରି ସେଇ ଏକ ଅନେକ ପାଇବା ହରାଇବା ଖୋଜିବା ବୁଝିବାର ରହସ୍ୟରେ ବ୍ୟାକୁଳ ହୋଇଛି। କେତେ ବିଚିତ୍ର ଭାବତରଙ୍ଗରେ କ୍ଷୋଭାକୁଳ ଏ ହୃଦୟକୁ ବେଳେବେଳେ ନିସ୍ତରଙ୍ଗତାର ଅତଳରେ ସ୍ଥିର ହୋଇଯିବା ଦେଖିଛି। ପ୍ରତିଟି ତରଙ୍ଗରେ ତୁମର ଅଜସ୍ର ରୂପବିନ୍ୟାସ ଦେଖୁଛି ତ, ହୃଦୟର ସ୍ଥିରାସନରେ ତୁମର ଗୋଟିଏ ଧ୍ୟାନମୌନ ରୂପଛବି ଦେଖୁଛି। ପାଖରେ ହଜାଇ ଦୂରରେ ଖୋଜିବାର ବିଡ଼ମ୍ବନା ଭିତରେ ଦୂରଜନକୁ ଅନ୍ତରଙ୍ଗ କରି ପାଇଛି।

ମୋର ଏଇ ପାଇବାକୁ ମୁଁ ବୁଝିବାପାଇଁ ସେଦିନ ତୁମର ସେଇପରି ସବୁ ଛାଡ଼ିବା ହୁଏତ ଅନିବାର୍ଯ୍ୟ ଥିଲା। ଏକମାତ୍ର ଗୋପାବଲ୍ଲଭଙ୍କ ଏକାନ୍ତ ଗୋପନ ପ୍ରେମ ନୁହେଁ; ବିଶ୍ୱ ପ୍ରତି ପ୍ରେମାପ୍ଲୁତ ଏକ ବିଶାଳ ହୃଦୟ ମଧ୍ୟ ଗୋପା ପାଇଁ ଅପେକ୍ଷିତ, ବିଚ୍ଛେଦ-ସଂତପ୍ତ ପ୍ରାଣ ପାଇଁ ଇଏ ତ ପ୍ରଣୟର ଅମୃତଶୀତଳ ଆଶୀର୍ବାଦ।

ଗୌତମ, ମୋ ଜୀବନର ସକଳ ସାର୍ଥକ ରୂପର ଉଚ୍ଚାରଣ ତ ତୁମେ। ମୋର ସାମର୍ଥ୍ୟ ଓ ଦୁର୍ବଳତା, ମୋର ପାଇବାର ଉଦ୍‌ଫୁଲ୍ଲତା, ହରାଇବାର ଆଶଙ୍କା ଓ ବିଚ୍ଛେଦ ଭାବନାର କାତରତା, ମୋର ଅହଂକାର ଓ ଦୈନ୍ୟ, ମୋର ଶକ୍ତି ଓ ଅସହାୟତାର ସବୁ ଉପଲବ୍‌ଧି ତ ତୁମକୁ ଘେରି। ପୃଥିବୀରେ ଜୀବନର ଦୟନୀୟତା, ପୁଣି ନିଜ ସୀମାକୁ ଅତିକ୍ରମ କରିବାର ଅହରହ ତତ୍‌ପରତାକୁ ଦେଖିନେବାର ଦର୍ପଣ ମୋ ପାଇଁ ତୁମେ ହିଁ ରହିଆସିଛ।

ଗୌତମ, ଆମେ ଦୁହେଁ ସ୍ରୋତର ଦୁଇ ବିପରୀତ ଧାରରେ ଖେଳୁଥିବା ନିଃସଂପର୍କ ଲହରୀ ନୁହଁ, ନଈ ମଝିରୁ ଏକତ୍ର ଉଠିଥିବା ଲହରୀ ଦୁଇଟି ବିପରୀତ ତୀରରୁ ଧାରର ଅନୁଭବ ସଂଗ୍ରହ କରି ପୁଣି ଫେରିଆସିବା ଏକାଠି ହେବାର ମଝିକୁ।

ଏକ ଓ ଅଭିନ୍ନ...। ସେଇଥିପାଇଁ ସିନା ଏତେ ଭିନ୍ନତା। ଦୁଇ ତୀରର ବ୍ୟବଧାନ। ଦୁଇ ଜୀବନଧାରାର ବ୍ୟବଧାନ। ଭିନ୍ନ ଅନୁଭୂତି ସଂଗ୍ରହର ଆୟୋଜନ।

ଏକ ସ୍ଥାନରୁ ଉଦ୍‌ଭୂତ ହେଉଥିବା ଲହରୀ ଦୁଇଟିର ସୃଷ୍ଟି ଭିନ୍ନ, କାରଣ ଭିନ୍ନ ସମୟ ଲୋଡ଼ନ୍ତି ନାହିଁ। ମୋର ସକଳ ପ୍ରେମାନୁଭବ, ବିରହାନୁଭବ ଓ ଜୀବନାନୁଭବ ତୁମର ପ୍ରେମ, ତୁମ ସହ ବିଚ୍ଛେଦ ଓ ତୁମ ଜୀବନ ସହିତ ସଂଯୋଗ ବ୍ୟତିରେକେ ସଂଭବ ହୋଇଥାନ୍ତା। ତୁମକୁ ଜାଣିନଥିଲେ ମୁଁ ନିଜକୁ, ମତେ ଲାଳନ କରିଥିବା ଏ ପୃଥିବୀକୁ, ମୋର ସୀମାସାମର୍ଥ୍ୟକୁ ଓ ସବୁ ସତ୍ତ୍ୱେ ଏକ ବିପୁଳ ଉତ୍ତରଣର ଆଶ୍ୱାସନାକୁ କିପରି ଲାଭ କରିଥାନ୍ତି? ତୁମେ ମତେ ଲୁଚି ଛପି ଯାଇ ନଥିଲେ ଆମ ସଂବନ୍ଧର ଟାଣପଣକୁ କିପରି ବୁଝିଥାନ୍ତି?

ଜୀବନରୁ ବିଦାୟମାନଙ୍କୁ ଯେ ଏଇପରି ଗୋଟି ଗୋଟି ଚିହ୍ନିରଖିବାକୁ ହୁଏ, ମାନିନେବାକୁ ହୁଏ, ମୁହୂର୍ତମାନଙ୍କୁ ଏଇପରି ବିଦାୟ ଦେବା, ଜୀବନର ସ୍ୱପ୍ନ ସଂବେଗମାନଙ୍କୁ ଏଇପରି ଗୋଟିଏ ନିର୍ଦ୍ଦିଷ୍ଟ ମୁହୂର୍ତରେ ହରାଇବସିବା ଯେ ସାରା ଜୀବନ ପାଇଁ ହରାଇବସିବା ଏବଂ ସେକଥା କେବଳ ନିଜପାଇଁ ଜାଣିରଖିବାକୁ ହୁଏ, କାହାକୁ ବୁଝାଇବାକୁ ହୁଏନା – ସେ କଥା କିପରି ବୁଝିଥାନ୍ତି ?

ସର୍ବୋପରି, ତୁମ ବୁଝାମଣାର ବିବାହ ରୂପ ବନ୍ଧନବେଦିକୁ ମୁଁ କିପରି ମୁକ୍ତିର ଯଜ୍ଞବେଦି କରିଥାନ୍ତି ?

ଗୌତମ, ଯେଉଁ ବନ୍ଧନକୁ ଭୟ କରି ତୁମେ ମତେ ତ୍ୟାଗକଲ, ସେହି ବନ୍ଧନ ହିଁ ମତେ ବନ୍ଧନାତୀତ ହେବାର ରହସ୍ୟ ଖୋଜାଇଛି। ତୁମ ସଂପର୍କରେ ଆସିନଥିଲେ ବ୍ୟକ୍ତିରୁ ବିଶ୍ୱ – ଏ ଦିଗନ୍ତ ଉନ୍ମୋଚନ ମୋ ପାଇଁ ହୁଏତ ସମ୍ଭବ ହୋଇନଥାନ୍ତା। ରାଜପ୍ରାସାଦର ଚାରିକାନ୍ଥ ଭିତରୁ ଖସି ବାହାରିଆସି ଖୋଲା ଆକାଶ ତଳେ ତୁମକୁ ଖୋଜିଲାଗିନଥିଲେ ବୋଧହୁଏ ମୁକ୍ତିର ଦିଗନ୍ତମାନଙ୍କୁ ଦେଖିପାରିନଥାନ୍ତି।

× × × ×

ଏ ସେହି କପିଳବାସ୍ତୁ। ଏ ସେହି ରାଜଅନ୍ତଃପୁର। ମୁଁ ସେହି ଯଶୋଧାରା। ମୋ ପାଇଁ ମୋ ପରିପାର୍ଶ୍ୱ ବା ସେ ପରିପାର୍ଶ୍ୱ ପାଇଁ ମୁଁ ଠିକ୍ ସେମିତି ବର୍ତମାନ। ତଥାପି ସେ ସବୁ ସହ ମୋର ସଂପର୍କର ଅର୍ଥ ଠିକ୍ ତୁମ ସହ ସମ୍ପର୍କ ଭଳି ବଦଳିଯାଇଛି। ସମ୍ପର୍କ ହିଁ ଅର୍ଥ ସୃଷ୍ଟି କରିଥାଏ ନା! ସମ୍ପର୍କର ଭଙ୍ଗାଗଢ଼ା ଉପରେ ଅର୍ଥର ଭିନ୍ନତା ଧରାପଡ଼ିଯାଏ।

ଦିନେ ଏ ପୃଥିବୀକୁ ଯେ ପ୍ରାପ୍ତିର ସ୍ଥଳ ବୋଲି ଭାବିଥିଲି, ପୃଥିବୀ ଭିତରେ ନିଜକୁ ହଜାଇଦେଇଥିଲି ଓ ପୃଥିବୀଠାରୁ ସେ ହଜିବାର ମୂଲ୍ୟ ଓ ସାର୍ଥକତା ଖୋଜିଥିଲି, ଜୀବନର ଏଇ ବିଶେଷ ବିଶେଷ ଅନୁଭବ ବ୍ୟତିରେକେ ସେ ମୂଲ୍ୟର ଯଥାର୍ଥ କଳନା ମୁଁ କରିପାରିନଥାନ୍ତି। ପ୍ରେମ, କର୍ମ, ସାଧନା, ମୁକ୍ତି – ଏ ସବୁର ରହସ୍ୟ ଉଦ୍‌ଘାଟନ କରିପାରି ନଥାନ୍ତି। ଜନ୍ମରହସ୍ୟ ଅନାବୃତ କରିପାରିନଥାନ୍ତି।

ନବାଗତା ବଧୂରୂପେ ରାଜରାଣୀ ଗୋପା ପାଇଁ ଏ କପିଳବାସ୍ତୁ ଥିଲା ଏକ ସୁଖସମ୍ଭୋଗଭରା ଶ୍ରୀମୟ ସ୍ୱର୍ଗପୁର। ଜୀବନ ଓ ଯୌବନ ନିଜର ସରସ ସୁନ୍ଦର ପ୍ରାଣ-ଉଚ୍ଛଳତାରେ ଧରଣୀକୁ କେତେ ରଙ୍ଗବତୀ କରି ସଜାଇପାରନ୍ତି, ପୁଣି ରୂପବତୀ ପୃଥିବୀ ଆପଣା ରଙ୍ଗରସ ସମ୍ଭାରରେ ଜୀବନ ପାଇଁ କେତେ ଲୋଭନୀୟ ହୋଇପାରେ, ସେଇ ସମୟଟା ଯେମିତି ଏକ ପ୍ରତିଯୋଗିତାର ଥିଲା। ରାଜପୁରର ବୈଭବ ବିଳାସ ଆଉ ତା'ର ମଣିଷର ସ୍ନେହ ପ୍ରେମ ଉଲ୍ଲାସ, ଉଚ୍ଛ୍ୱାସ – ଯେମିତି ଯା ବାହାରେ ଆଉ କିଛି କାମ୍ୟ, ଆଉ କିଛି ଗନ୍ତବ୍ୟ ଥାଇପାରେ, ତା' ମୋର କଳ୍ପନାର

ବାହାରେ ଥିଲା । ଯେମିତି ଏ ପୃଥିବୀ ମୋତେ ସୁଖୀ ରଖିବାକୁ, ଅନ୍ତତଃ ମଣିଷର ଇତିହାସରେ ଜଣକୁ କାହାକୁ ସର୍ବାନ୍ତଃକରଣରେ ସୁଖୀ ଦେଖିବାକୁ, ତା'ର ଆପ୍ରାଣ ଆୟୋଜନରେ ନିୟୋଜିତ ରହିଥିଲା ।

ଗୌତମ, ପ୍ରେମ ସହ ସମ୍ପର୍କ କାହାର ? ଦେହର, ମନର, ପ୍ରାଣର, ବୟସର ନା ସମୁଦାୟ ଜୀବନର ?

କୈଶୋରରେ ଆଖିର ରେଖା ସଙ୍ଗେ ଆଖି ଦେଖୁଥିବା ସବୁ ଜଗତରେ ଯେ ରକ୍ତିମା ବିଚ୍ଛୁରିତ ହୋଇଯାଏ, ତା' ଯେ ଜୀବନର ପୃଥିବୀ ପ୍ରତି ପୂର୍ବରାଗର ପୂର୍ବାଭାସ, ତା ତୁମ କିଶୋରୀ ବଧୂ ରୂପେ ବୁଝିପାରିନଥିଲି । ସେତେବେଳେ ନିଜକୁ କି ଏ ପୃଥିବୀକୁ ମୁଁ କିଛି ବି ବୁଝିନଥିଲି । ଭାବକୁ, ଅନୁଭବକୁ ବୁଝିବାକୁ ଲୋଡାହୁଏ ବୋଲି ଜାଣିନଥିଲି । ସବୁ ସ୍ୱୀକାର କରିନେଇଥିଲି । ଅହୋରାତ୍ର କଳ୍ପନାର ପକ୍ଷରେ ଉଡୁଥିଲି ଆଉ ଏକ ଅନିର୍ବଚନୀୟ ଆଚ୍ଛନ୍ନତା ଭିତରେ ଯେ ଦିବାରାତ୍ର ମଜ୍ଜି ରହିଥିଲି, ସେ ଆଚ୍ଛନ୍ନତା ଥିଲ ତୁମେ ।

ଆଜି କିନ୍ତୁ ଜାଣୁଛି, ସେ 'ତୁମେ' କୁ ମୁଁ ତୁମ ପାଇଁ ନୁହେଁ, ମୋ ପାଇଁ ହିଁ ମୋର କରି ସଜାଇ ରଖିଥିଲି । ମୋର ସକଳ ବିହ୍ୱଳତା, ଭାବନା, ଶଙ୍କା ଓ ସ୍ୱପ୍ନ ତୁମକୁ ଘେରି ମତେ ଚରିତାର୍ଥତାର ତୃପ୍ତିରେ ଭିନ୍ନ ଭିନ୍ନ ସ୍ୱାଦ ଚଖାଇବାର ସନ୍ଧାନ-ତତ୍ପର ଥିଲା । ମୋର ଭାବବିଳାସର ବାହକ ଥିଲା ଛବିଳା ପ୍ରକୃତି । ସଙ୍ଗୀତ, ନୃତ୍ୟ, ଉତ୍ସବ ମତେ ଘେରି ରହିଥିଲେ । ଦେଖୁଥିଲି, ଚାରିପଟେ ମୋର ଭଲପାଇବାର ଭିଡ଼ । ମୁଁ ସେଠି ସମ୍ରାଜ୍ଞୀ । ନିଜକୁ ଅଜାଡ଼ିଦେବା, ଉଜାଡ଼ିଦେବାର ଗୂଢ଼ ଜାଣିନଥିଲି । ପ୍ରାପ୍ତିର ପୂର୍ଣାଞ୍ଜଳିରେ ପରିତୃପ୍ତା ମୁଁ ମୋର ସ୍ୱପ୍ନ, ଅଭିଳାଷ ଓ ଦାବୀମାନେ ମୋର ପ୍ରେମର ପ୍ରମାଣ ପ୍ରତିଶ୍ରୁତି ବୋଲି ଧରିନେଇଥିଲି । ଛଳ, କୋପ, ମାନଭଞ୍ଜନ ଓ ଦାମ୍ପତ୍ୟ ପ୍ରଣୟର ମଧୁରତମ ଫଳଶ୍ରୁତି– ରାହୁଳ, ସେ ପ୍ରେମର ଶେଷକଥା ଥିଲା ।

ଜୀବନର ପରିପୂର୍ଣତାକୁ ବୁଝିବା ପାଇଁ ଆଉ ବେଶୀ କ'ଣ ଲୋଡ଼ାଥିଲା ? . . .

ଦୁଃଖ ନା ଦୁଃଖାଭାସ ? ପରିପୂର୍ଣ ଯୌବନ ଓ ପରିତୃପ୍ତ ଜୀବନ, ଯା ବାହାରେ ତ ଏଭଳି ଏକ ଅପରିତୃପ୍ତ ପୃଥିବୀ ଆପଣାର ଅଶାନ୍ତ ନିଃଶ୍ୱାସରେ ଜଳୁଥାଏ ବୋଲି ଜାଣିନଥିଲି । ଏତେ ସୁଖ ଭିତରେ ବି ତୁମ ଉଦାସପଣଟି ବେଳେବେଳେ ମତେ ଯେମିତି ଚମକାଇଦିଏ । ଯୌବନୋଚ୍ଛଳ କୋଳାହଳ ଭିତରୁ ଜରାଜୀର୍ଣତାର ଦୁର୍ବଳ କମ୍ପିତ ସ୍ୱର ପରି, ଜୀବନର ପ୍ରକମ୍ପିତ ନୃତ୍ୟୋଲ୍ଲାସ ଭିତରୁ ମରଣର ଥରଥର କ୍ଷୀଣ ପଦ ପରି ତୁମର ଉଦାସ ଅନ୍ୟମନସ୍କତା ମୋର ନିଃଶ୍ୱାସକୁ ଯେମିତି ଭିତରେ କେଉଁଠି କିଛି ସମୟ ପାଇଁ ଅଟକାଇଦିଏ ।

ଭାବିବସେ, କାମଦେବର ଆଡ଼ମ୍ବରରେ ସଜ୍ଜିତ ଇଏ କେଉଁ କାମବିରାଗୀଙ୍କ କାମିନୀ ହେବାର ଭାଗ୍ୟ ମୁଁ ଲାଭକରିଛି ? ଜାଣିନଥିଲି ଯେ, ଉମା ଯେଉଁ ତପସ୍ୟା କରି ଶିବପ୍ରାପ୍ତ ହୋଇଥିଲେ, ମୃତ୍ୟୁଞ୍ଜୟ ସ୍ୱାମୀ ଓ ଅନଙ୍ଗବିଜୟୀ ପ୍ରେମ ପ୍ରାପ୍ତ ହୋଇଥିଲେ, ସେ ତପସ୍ୟା ମତେ ବିବାହ ପରେ ଆଜୀବନ କରିବାକୁ ପଡ଼ିବ ।

ସେ ତପସ୍ୟା ମୁଁ କରିନାହିଁ। ଜୀବନ ମୋର ହାତଧରି ସେ ବାଟରେ କଢ଼ାଇ ଆଣିଛି। ପ୍ରେମ ମୋର ତପସ୍ୱିନୀର ସାଜ ଧରି ପରମ-ତପସ୍ୱୀଙ୍କ ପ୍ରେମ ସାଧନ ମାର୍ଗରେ ମତେ ବିଯୋଗିନୀ ସଜାଇଦେଇଛି।

ଗୌତମ, ଏ ସଂସାର ତ ସଂଯୋଗୀର। ବିଯୋଗୀକୁ କିଭଳି ପ୍ରେମ କରାଯାଏ ? ବୈରାଗୀର ପ୍ରେମ ପାଇଁ କେଉଁ ସାଧନା କରାଯାଏ ?

ଉମାଙ୍କ ତପସ୍ୟା ମହାଯୋଗୀ ମଦନବିଜୟୀଙ୍କୁ ମହାଭୋଗୀ ପ୍ରେମର ଈଶ୍ୱରରେ ରୂପାନ୍ତରିତ କରିଦେଲା, ଆଉ ସେହି ତପସ୍ୟାର ଭାଗ୍ୟ ନାହିଁ ବୋଲି ଗୋପାର ସମ୍ଭୋଗୀ ସ୍ୱାମୀ ରିକ୍ତତାର ପଥରେ ଅକାଳ-ବୈରାଗୀ ?

ବୈରାଗ୍ୟରୁ ଅନୁରାଗ ନା ଅନୁରାଗରୁ ବୈରାଗ୍ୟ ?

ଏ ପୃଥିବୀରେ କାହାଠାରୁ ଯାତ୍ରାରମ୍ଭ କରି କେଉଁଠାରେ ଶେଷ କରିବାକୁ ହୁଏ ?

ମହାଭୋଗୀର ସିଂହାସନାରୂଢ଼ ମହାଯୋଗୀଙ୍କର ବାମାଙ୍କରେ ରହି ଗୋପା ଯେ କେବଳ ତା'ର ହୃଦୟର ଯାତ୍ରାପଥକୁ ଅନ୍ୱେଷଣ କରିଆସିଛି !

ପ୍ରେମଦେବତାଙ୍କ ପାଇଁ କୁଆଡ଼େ ପଥସନ୍ଧାନ କରିବାକୁ ହୁଏ ନାହିଁ। ସେ ତୀର୍ଥଦେବତା ଆପେ ପଥଦ୍ରଷ୍ଟା ହୋଇ ବାଟ କଢ଼ାଇ ଆଣନ୍ତି।

ଦେଖାଇଦିଅନ୍ତି, ବୈରାଗ୍ୟର ଗୈରିକ ରଙ୍ଗ ହିଁ ଅନୁରାଗର ନିଜ ରଙ୍ଗ।

ଦୂରତ୍ୱ ବ୍ୟବଧାନ ନୁହେଁ। ବିଚ୍ଛେଦ ବିସ୍ମରଣ ନୁହେଁ। ସ୍ଥାନ ଓ କାଳର ସବୁ ସୀମା ଅତିକ୍ରମ କରି ସ୍ୱମହିମାରେ ଯାହା ପ୍ରକଟିତ ଓ ପ୍ରତିଷ୍ଠିତ ତାହାହିଁ ପ୍ରେମ।

ସେ ପ୍ରେମ ଆଁପଣା ପାଖେ ବା ଅପରପାଖେ ଦୁର୍ବଳତା ନୁହେଁ; ଆତ୍ମଶକ୍ତିରେ ସବଳ ଏବଂ ଅପରପାଖେ କୋମଳ ବୋଲି ତ ତାହା ମତେ ନିଜ ଭିତରର ସବୁ ଦୁର୍ବଳତାକୁ ଗୋଟି ଗୋଟି ଚିହ୍ନି ଉଦ୍‌ଘାଟ କରିବାର ବାଟ ବତାଇ ଆସିଛି।

ଗୌତମ, ତୁମେ ଆଜି ଗୋଟିଏ ନାରୀ ପାଇଁ କେବଳ ପୁରୁଷ ବିଶେଷ ନୁହଁ, ସ୍ତ୍ରୀର ସ୍ୱାମୀ ନୁହଁ, ପ୍ରେମିକାର ପ୍ରେମିକ ନୁହଁ, କି ଗୋପାର ଗୌତମ ନୁହଁ। ମାତ୍ର ତୁମେ ଯେ ଆଜି ସାରା ବିଶ୍ୱର ଏବଂ ସେ ବିଶ୍ୱରେ ଗୋପାର ମଧ ଅଂଶ ରହିଛି ଏବଂ ବିଶ୍ୱ ସହ ଏଭଳି ଭାଗ ବାଣ୍ଟିବା ଯେ ଯଥାର୍ଥ ଭୋଗ, ସେକଥା ବୁଝିବା ପାଇଁ କ'ଣ ମୋର ଅତୀତର ସେହି ଖଣ୍ଡିତ ମୁହୂର୍ତ୍ତଗୁଡ଼ିକର କିଛି ଭୂମିକା ନାହିଁ ଯେଉଁଠି ଏକାନ୍ତଭାବେ ତୁମ ପତ୍ନୀତ୍ୱର ପରିଚୟ ଗୌରବରେ, ଅହଂକାରରେ, ତୁମ ପ୍ରତି ଅନ୍ୟ କାହାର ପ୍ରୀତିଭାବନାକୁ, ତୁମ ମନରେ ଅନ୍ୟ କାହାରି ପ୍ରତି ସହୃଦୟତାକୁ ମଧ ସହ୍ୟକରି ପାରୁନଥିଲି ? ସେ କ୍ଷୁଦ୍ରତାଟିକୁ ଦେଖି ନଥିଲେ ଆଜିର ବିଶ୍ୱକୁ କୋଳାଗ୍ରତ କରିନେବାର ଶକ୍ତି ମୁଁ ହୁଏତ ଖୋଜିନଥାନ୍ତି।

ରାଜଅନ୍ତଃପୁରରେ ଯୁବରାଜ ଗୌତମଙ୍କ ରୂପ-ଗୁଣ-ବ୍ୟକ୍ତିତ୍ୱ-ମୁଗ୍ଧ ବହୁ ସପ୍ରଶଂସ ସମାଦର ପ୍ରତି ଯୁବରାଣୀ ଗୋପା ଈର୍ଷାନ୍ୱିତ ହେବାରେ ଆଶ୍ଚର୍ଯ୍ୟ କ'ଣ ଅଛି ? ମୋ ସତ୍ତାର ଏକାଂଶ ପ୍ରିୟ ପ୍ରେମରେ ନିବିଡ଼ ନିମଜ୍ଜିତ ତ ଅନ୍ୟ ଏକ ପାର୍ଶ୍ୱ

ଦିବାରାତ୍ର ଉତ୍କଣ୍ଠିତ ଆତଙ୍କରେ, ଜ୍ୱଳନରେ, ଯଦିଚ ଜାଣୁଥିଲି ମୁଁ ଯାହାର ପ୍ରାଣାଧିକା ସେ ତ ପୃଥିବୀର ସବୁ ପ୍ରିୟ ଭାବନାର କେନ୍ଦ୍ରବିନ୍ଦୁ। ମାତ୍ର ମୋର ଅଧିକାର-ମତ୍ତତା ଆଉ ମୋର କ୍ଷୁଦ୍ର ହୃଦୟର ହରାଇ ବସିବାର ଭୀତିକାତରତା ଯେମିତି ଦିନରାତି ଆଶଙ୍କା-କମ୍ପିତ ଥିଲା; ଯେମିତି ସିଦ୍ଧାର୍ଥ ଏକ ଶିଶିରବିନ୍ଦୁ, ଝଲକାଏ ସୂର୍ଯାତାପରେ ଶୁଖିଯିବେ, ଯେମିତି ସିଦ୍ଧାର୍ଥ ଏକ କ୍ଷୁଦ୍ର ତଡାଗ, ଶୋଷର ଆଞ୍ଜୁଳିଟିରେ ଶୋଷିହୋଇଯିବେ। ମୋର ସକଳ ଐଶ୍ୱର୍ଯ ସମ୍ଭାର ସେଇ ଗୋଟିଏ ହୃଦୟରତ୍ନକୁ କାହାର ଲୋଭିଲା ହାତ ଆତ୍ମସାତ୍ କରିନେବ।

ତା'ପରେ ତ ମୁଁ ଶୂନ୍ୟ ହୋଇଯିବି।

ପ୍ରାଣର ସେ ଭୀରୁତା, ମନର ସେ ଅଧିକାର ମୂଢ଼ତାର ଅବରୁଦ୍ଧ ଦୁର୍ଗରେ ମୁଁ ବୋଧହୁଏ ଚିରବନ୍ଦିନୀ ରହିଯାଇଥାନ୍ତି ଯଦି ତୁମର ଅକସ୍ମାତ୍ ଆତ୍ମନିର୍ବାସନର ପ୍ରଚଣ୍ଡ ବଜ୍ରାଘାତରେ ବିଦୀର୍ଣ ସେ ମାୟାମହଲରୁ ମୁଁ ହଠାତ୍ ଏକ ହତାଶାର ଶୂନ୍ୟ ଗହ୍ୱରକୁ ଛିଟ୍‌କି ପଡ଼ିନଥାନ୍ତି।

ଏଭଳି ଗହ୍ୱର, ଯେଉଁଠି ହାତ କାଛ ପାଏ ନାହିଁ।

ଏଭଳି ଅନ୍ଧାରି ଶୂନ୍ୟତା, ଯେଉଁଠି ଛାୟା ମଧ ସଙ୍ଗ ଧରେ ନାହିଁ।

ଶୂନ୍ୟତାର ଏଭଳି ପୂର୍ଣରୂପ, ନାସ୍ତିବାଚ୍ୟକତାର ଏଭଳି ପ୍ରତ୍ୟକ୍ଷାନୁଭବ! ଗୌତମ, ଅଛି ନାହିଁର ସବୁ ପ୍ରହେଳିକା ଭିତରେ ଯେମିତି ଏକମାତ୍ର ତୁମେ ହିଁ ସତ, ଆଉ ବାକି ମୋ ସମେତ ଏ ବିଶ୍ୱଭୁବନ ଓ ଅନନ୍ତକାଳ ସବୁ ମିଛ ମାୟା ଭ୍ରାନ୍ତି, କ୍ରମଶଃ ମିଳାଇଯାଉଥିବା ଏକ ପରିହାସର ଶେଷ ହସ ମାତ୍ର!

କୋମଳ ବୋଲି ଜାଣି ଆସିଥିବା ପ୍ରେମର ବଜ୍ରକଠୋରତାକୁ ମୁଁ ସେଇଦିନୁ ବୁଝିବାକୁ ଆରମ୍ଭ କଲି। ନିଜକୁ ହଜାଇଦେଲେ ତୁମକୁ କିପରି ଖୋଜିବି? କେଉଁଠାରେ ଧାରଣ କରିବି? ବିଶ୍ୱାସକୁ ହଜାଇଦେଲେ, ପ୍ରତ୍ୟୟକୁ ହଜାଇଦେଲେ ପ୍ରୀତିକୁ କେଉଁଠାରେ ଧାରଣ କରିବି?

ମୁଁ 'ବଜ୍ର-ଧରା' ହେବାର ସାଧନାରେ ନିଜକୁ ଅଭିମନ୍ତ୍ରିତ କଲି।

ଅବରୁଦ୍ଧ ଅଙ୍ଗନର ପ୍ରାଚୀର ବାହାରକୁ ଚାଲିଆସି ଦେଖିଲି ଯେ, ଅମିତାଭ ବୁଦ୍ଧ ସ୍ୱୟଂ ଦିବ୍ୟପ୍ରେମର ରୂପଘନ ଆବିର୍ଭାବ। ଏ ପୃଥିବୀରେ ସକଳ ପ୍ରକାଶିତ ଅପ୍ରକାଶିତ ପ୍ରେମର ସବୁ ସୂକ୍ଷ୍ମ ଭାବତରଙ୍ଗ ତାଙ୍କ ପାଖକୁ ଆକର୍ଷିତ ଓ ତାଙ୍କଠାରୁ ବିକର୍ଷିତ। ଏ ପ୍ରେମକୁ କିଏ ଆସ୍ପୃହା ନକରିବ, ଏ ପ୍ରେମରୁ କିଏ ବଞ୍ଚିତ ରହିବ? ଏ ସମୁଦ୍ରକୁ ଶୁଖାଇଦେବ, ଏଭଳି ଶୋଷ କାହିଁ? ଆଉ ସମୁଦ୍ରର କେଉଁ ଜଳବିନ୍ଦୁକୁ ବର୍ଷାର ବାଷ୍ପବିନ୍ଦୁ ହୋଇ ଅପର ପ୍ରାନ୍ତରେ ଥିବା ମରୁପୃଥିବୀର ଶୋଷ ମେଣ୍ଟାଇବାକୁ ବାରଣ କରାଯାଇପାରିବ? ଏ ସମୁଦ୍ର ଯଦି ଶୁଖିଯିବ, ତେବେ ପୃଥିବୀର ସମୁଦାୟ ଭାଗ୍ୟ ମରୁଭୂମି ହୋଇଯିବ। ଏକମାତ୍ର ତ ମୋର ଦୁର୍ଭାଗ୍ୟ ହୋଇ ରହିବ ନାହିଁ। ଯେଉଁ ବର୍ଷାର ଆକାଶ ସାରା ଧରଣୀକୁ ସଜଳ ସରସ ଜୀବନନିଷିକ୍ତ କରିପାରେ, ଗୋପାର ହୃଦୟକୁ ଓଦା ରଖିବାକୁ ତା ପାଖରେ ଜଳବିନ୍ଦୁଏର ଅଭାବ ହେବ?

ଗୌତମ, ଗୋପା ତୁମକୁ ଦିନେ ଏକାନ୍ତ 'ତା'ର' କରି ପାଇବାର ଗର୍ବ ଅହଂକାର ସତ୍ତ୍ୱେ ବି 'ମୋର' ଖର୍ବତ୍ୱ ହେତୁ ହରାଇବାର ଆଶଙ୍କାଜର୍ଜର ଥିଲା। ଆଜି ଗୋପାର ପ୍ରାଣପ୍ରିୟ ନିଖିଳ-ବଲ୍ଲଭରେ ରୂପାନ୍ତରିତ ହୋଇଯାଇଛନ୍ତି। ସମଗ୍ର ବିଶ୍ୱ ପ୍ରେମ କରୁଣାର ଯେଉଁ ବିଶାଳ ହୃଦୟରେ ସମାସୀନ, ସେଠାରେ ଗୋପା ପାଇଁ ସ୍ଥାନର ଅଭାବ ହେବନାହିଁ। ସମଗ୍ର ପୃଥିବୀ ପାଇଁ ନଇଁ ଆସିଥିବା ବର୍ଷା-ଆକାଶରୁ ଚାତକ ତା'ର ପାଣି ମୁନ୍ଦାକ ଠିକ୍ ଖୋଜିନେବ। ଗୋପା ଯେ କିଛି ହରାଇନାହିଁ, ବରଂ ବହୁଭାବରେ ପୂର୍ଣତର କରି ତା'ର ପ୍ରିୟ ପ୍ରେମକୁ ଲାଭ କରିଛି, ଯାହା କେବଳ 'ଗୋପା-ବଲ୍ଲଭ'ର ପରିଚୟ ସୀମିତ ଗୌତମଙ୍କଠାରୁ ସେ ହୁଏତ ପାଇପାରିନଥାନ୍ତା।

ହରାଇବା, ପାଇବାର ଏ ବିଚିତ୍ର ଘଟଣା-ବିନ୍ୟାସ ଭିତରେ କ'ଣ ମୁକ୍ତିର ରହସ୍ୟ ଲୁକ୍କାୟିତ ନାହିଁ? ନଦୀ ସମୁଦ୍ରର ଜଳ ନେଇ ମେଘ ଆପଣାକୁ ଜଳମୟ କରିଦିଏ। ପୁଣି ସେ ମେଘ ନଦୀ ସମୁଦ୍ରର ଜଳରୂପେ ପୃଥିବୀକୁ ଫେରିଆସେ। ତଥାପି ନଦୀ ସମୁଦ୍ରର ଜଳକୁ ବର୍ଷାଜଳ ସହ ସମାନ ବୋଲି ମୁଁ କିପରି କହିବି? ଚାତକ ସେତିକି ତାରତମ୍ୟ ବୁଝିଛି ବୋଲି ମେଘର ଜଳକୁ ତା'ର ଲୋଭ, ନଦୀ ସମୁଦ୍ରକୁ ନୁହେଁ।

ହେ ମୋର ନୀଳଘନ! ଚାତକ ପରି ଗୋପାର ସେ ନବପ୍ରେମ ପ୍ରତ୍ୟାଶିନୀ ଅପେକ୍ଷାକୁ 'କାହିଁକି' ବୋଲି ପ୍ରଶ୍ନ କରନାହିଁ।

ମେଘଜଳକୁ ନଦୀଜଳ କରି ପାଇଲେ ହୁଏତ ଚାତକର ଶୋଷ ମେଣ୍ଟିବ, ମାତ୍ର ଆକାଶର ମଧୁରତା ଟିକକ ମିଳିବନାହିଁ।

ପାର୍ଥିବ ଦାମ୍ପତ୍ୟକୁ ଅତିକ୍ରମ କରି ଗୋପାର ଚେତନାକାଶରେ ଯେ ବୈରାଗୀ ପ୍ରେମ ତା'ର ନବରାଗ ଐଶ୍ୱର୍ଯରେ ସମୁଦିତ, ଗୋପା ସେ ଆପାର୍ଥିବତା ଟିକକ ତା'ର ମୁକ୍ତିସ୍ୱାଦ ରୂପେ ଲାଭକରିବ।

ଶିଶିର ବିନ୍ଦୁଟିଏ ସମଗ୍ର ଆକାଶର ପ୍ରତିବିମ୍ବକୁ ଧାରଣ କରିବା ପରି, ଭକ୍ତର ହୃଦୟ ଈଶ୍ୱରଙ୍କୁ ଧାରଣ କରିବା ପରି, ମୋର କ୍ଷୁଦ୍ର ହୃଦୟରେ ଶାଶ୍ୱତ ପ୍ରେମ ବିଗ୍ରହମନ୍ତ ହୋଇ ରହିଥିବ। ଶିଶିରବିନ୍ଦୁ ଆକାଶ ହୋଇଯାଏ ନାହିଁ। ଭକ୍ତ ଭଗବାନ୍ ହୋଇଯାଏ ନାହିଁ। କ୍ଷୁଦ୍ର ବିରାଟ ହୋଇଯାଏ ନାହିଁ; ବିରାଟ ଧାରଣର ସାମର୍ଥ୍ୟ କିନ୍ତୁ ହରାଏ ନାହିଁ।

## ।। ପାଞ୍ଚ ।।

ଗୌତମ, ରୂପାଧାରରେ ବିଡ଼ମ୍ବିତ ଗୋପାର ସାଧାରଣ ନାରୀସତ୍ତା ତ ଚିରଦିନ ଏକ ସାମ୍ରାଜ୍ୟ ଚାହିଁଛି, ପୁରୁଷକୁ ବଶ କରି ଯେଉଁଠି କେବଳ ସାମ୍ରାଜ୍ଞୀ ହେବା ସମ୍ଭବ ହୁଏ। ଆଉ ନିଜକୁ ଏକ 'ଭୋଗକ୍ଷେତ୍ର' ସଜାଇଦେଇଛି, ଟିକେ ସୁଖ ପାଇଁ,

ସ୍ୱାଚ୍ଛନ୍ଦ୍ୟ ପାଇଁ, ସେବା ପାଇଁ, ସ୍ନେହ ପ୍ରେମ ପାଇଁ ଓ ଆପଣାର ପୌରୁଷର ସ୍ପର୍ଦ୍ଧା ପାଖେ ଟିକେ ଆନୁଗତ୍ୟ ପ୍ରକାଶ ପାଇଁ ନାରୀହୃଦୟ ପାଖେ ପୁରୁଷ ନତଜାନୁ ରହିଯାଉ, ସେବାକାରିଣୀ ରୂପେ ନାରୀ ପୁରୁଷଙ୍କୁ ପ୍ରକାରାନ୍ତରେ ତା ପାଖେ ଅସମର୍ଥ, ନିର୍ଭରଶୀଳ ପରିଚୟରେ ସମର୍ପିଦେବାର ଦେଖୁ।

ଏଇ ତ ଉଭୟଙ୍କର ପରସ୍ପର ପ୍ରତି 'ମାୟା' ଏବଂ ଏଇଥିପାଇଁ ଉଭୟେ ପରସ୍ପର ପାଖେ ମାୟା, ପରସ୍ପର ପାଇଁ ବନ୍ଧନର ହେତୁ।

ମୋ ଭିତରର ଚିରନ୍ତନୀ ନାରୀଟି ଏକ ପରମ-ଭୋଗୀର ବାମାଙ୍କରେ ରହି ପାର୍ଥିବ ପ୍ରେମକୁ, ସୁଖକୁ ଏବଂ ପୁରୁଷକୁ ଦାବୀ କରି ବସିବାବେଳେ କିନ୍ତୁ ଯେତେବେଳେ ଦେଖିଛି ପରମ-ଯୋଗୀଟି ପଦ୍ମପତ୍ରର ଜଳବିନ୍ଦୁପରି ସକଳ ଭୋଗ ଆକର୍ଷଣରୁ ଅନାୟାସରେ ନିର୍ଲିପ୍ତ ହୋଇ ଚାଲିଯାଇଛି, ସେ ମଧ୍ୟ ନିଶ୍ଚିନ୍ତ, ତା'ର ନାରୀତ୍ୱ ସ୍ୱତଃ ବନ୍ଧନମୁକ୍ତ। ଯେଉଁ ଆସକ୍ତିର ଜାଲରେ ପୁରୁଷକୁ ବନ୍ଧାଯାଏ, ସେ ଜାଲର ଏକପାଖରେ ନାରୀ ମଧ୍ୟ ଆପଣାଛାଏଁ ବନ୍ଧାପଡ଼େ। ନିଜର ମୁକ୍ତିର ଭବିଷ୍ୟତକୁ ଅନ୍ୟର ବନ୍ଧନର ଭାଗ୍ୟପାଖେ ସମର୍ପିଦିଏ।

ବନ୍ଧନ ଏକା ସଙ୍ଗେ ଦୁହିଁଙ୍କୁ ବାନ୍ଧିଥାଏ। (ଏକାଧିକ ନହେଲେ ବନ୍ଧନ ହୁଏନା)। ମୁକ୍ତି ଏକା ସଙ୍ଗେ ଉଭୟଙ୍କୁ ଖୋଲିଦିଏ।

ଗୋଟିଏ ଜନ୍ମର ବନ୍ଧନ ବିନ୍ୟାସରେ ଜନ୍ମଜନ୍ମାନ୍ତରର ମୁକ୍ତି ରହସ୍ୟ ଉନ୍‌ମୋଚିତ ହୋଇଯାଏ – ଗୌତମ! ଏଇ ଗୋଟିଏ ଜନ୍ମରେ ତ ଜନ୍ମଜନ୍ମାନ୍ତରମାନେ ଭୋଗ ହୋଇଗଲେ। ଶୈଶବ, ଯୌବନ, ଜରା କେବଳ ଅଙ୍ଗରେ ନୁହଁ, ମନ ପ୍ରାଣ ଘେରି ସମଗ୍ର ସତ୍ତାର ଅନୁଭବରେ ରୂପସିଦ୍ଧ ହୋଇଗଲେ। ଏହା ପରେ? ଜନ୍ମାନ୍ତର ଶେଷର ପୂର୍ଣଛେଦ ଚିହ୍ନ ନା ଜନ୍ମ ପୂର୍ବର ଆରମ୍ଭ ବେଳାର ସୂଚନା ସଙ୍କେତ? ମହାଶୂନ୍ୟ ନା ନିର୍ବାଣ? ମହାମୃତ୍ୟୁ ନା ମହାଜୀବନ?

ଜୀବନର ସହଜ ପଥରେ ବିଘ୍ନ ହୋଇ ଦେଖାଯାଉଥିବା ମୃତ୍ୟୁର ଅସୁମାରି କ୍ଷୁଦ୍ର ବୃହତ୍ ଆୟୋଜନ, ବଞ୍ଚିବାର ରହସ୍ୟକୁ ପରସ୍ତ ପରସ୍ତ ଉଖାରି ମୋ ପାଖରେ ବାଢ଼ିହୋଇଯାଉଥିବା ଏ ଜୀବନ, ଗୌତମ, କି ଅଦ୍ଭୁତ ଭାବରେ ମତେ ଜଣାଇ ଦେଇଗଲା ଯେ ଏ ପୃଥିବୀରେ ପ୍ରେମ ଓ ମୃତ୍ୟୁକୁ ଏକ ସଙ୍ଗରେ ଏକ ମୁହୂର୍ତ୍ତରେ, ଏକ ପରିପ୍ରେକ୍ଷୀରେ, ଏକ ଅନୁଭୂତିସିଦ୍ଧ ବିନ୍ଦୁରେ ବୁଝିବାକୁ ହୁଏ! ପ୍ରେମର ସଂବନ୍ଧ ଯେଉଁ ପର୍ଯ୍ୟନ୍ତ ପ୍ରସାରିତ, ମୃତ୍ୟୁର ହସ୍ତ ସେତେଦୂର ପ୍ରଲମ୍ବିତ। ସମ୍ପର୍କହୀନତା ପାଖରେ ମୃତ୍ୟୁର ଆଘାତ ପହଞ୍ଚିପାରେନାହିଁ। ପ୍ରେମର ଆକାଶ ପର୍ଯ୍ୟନ୍ତ ମୃତ୍ୟୁର ଦିଗନ୍ତ ବିସ୍ତାରିତ। ପ୍ରେମର ଆନନ୍ଦକୁ ମୃତ୍ୟୁ ବହୁଭାବେ କ୍ଷୁର୍ଣ୍ଣ କରିବାକୁ ଚାହେଁ। ହୃଦୟର ଟିକି ଟିକି ଦୁଃଖ କ୍ଷୋଭକୁ ଆଳ କରେ, ଜୀବନର ସବୁ ଅସ୍ତିବାଚକତାକୁ 'ନା'ର ପ୍ରତିଧ୍ୱନି ଶୁଣାଏ।

ମାତ୍ର ଜୀବନ ସେ 'ନା' ର ପ୍ରତ୍ୟୁତ୍ତର 'ନା' ରେ ଦିଏନାହିଁ। ଗୋଟାଏ 'ଅସ୍ତୁ'ର ଆଶ୍ୱାସନା ଯେତେ କ୍ଷୀଣାତିକ୍ଷୀଣ ହେଲେ ବି ସେ 'ନା' ର କୋଳାହଳ

ଭିତରୁ ନୀରବ ସଂଚରଣରେ ପ୍ରସରିଆସେ। ସେ 'ହଁ' ଯେ ପୃଥିବୀର ଭବିଷ୍ୟତ। 'ନା' ଅତୀତ ହୋଇପାରେ, ବର୍ତମାନ ହୋଇପାରେ, ଭବିଷ୍ୟତ କିନ୍ତୁ 'ହଁ'ର ପ୍ରାଣସ୍ପନ୍ଦନ ଉପରେ ଅବସ୍ଥାପିତ। 'ହଁ' କୁ ଅସ୍ୱୀକାର କରିଦେଲେ, ଅସ୍ତିକୁ ନାସ୍ତି କରିଦେଲେ, ପୃଥିବୀର ଭବିଷ୍ୟତ ରହିବ ନାହିଁ।

ପୃଥିବୀ ଗୋଟିଏ ଅପାର୍ଥିବ ଭବିଷ୍ୟତକୁ ନିଜ ବିଶ୍ୱାସରେ ଗ୍ରହଣ କରିନେଇଛି ବୋଲି ସବୁ 'ନା'ର ଆଘାତ ସହିବାକୁ, ବିରୋଧ କରିବାକୁ, ପରୀକ୍ଷା କରିବାକୁ ଦୁଃସାହସିକ ପଦ ଉଠାଇପାରୁଛି। ମୃତ୍ୟୁର ଶୀତଳତା ଭିତରୁ ଜୀବନର ଉଷ୍ଣତା ସନ୍ଧାନ କରୁଛି। ମୃତ୍ୟୁର ପ୍ରତିପକ୍ଷରେ ଜୀବନର ଏଇ ଯେ ସାହସିକ ଉଦ୍ୟମ, ସେ ସାହସ ତ ତା'ର ଅନ୍ତର୍ଗତ ପ୍ରେମ !

ପୃଥିବୀ ମାଟିପଥରର ବୋଝ ବହିବା ଭଳି, ଫୁଲ ପରାଗ ରେଣୁର ବୋଝ ବହିବା ଭଳି, ପ୍ରେମ ଯେ ଜୀବନର ବୋଝ ସମ୍ଭାଳି ଚାଲିଛି, ପୃଥିବୀର ସବୁ ଭବିଷ୍ୟତ ଆଶା ତ' ସେ ପ୍ରେମର ଅଙ୍ଗୀକାର ପାଖେ ଅଞ୍ଜଳିବଦ୍ଧ।

ଗୌତମ !

ନିଜକୁ ସୁନ୍ଦର ଯିଏ ଦେଖାଇଦିଏ,
ନିଜକୁ ଭଲପାଇବାକୁ ଯିଏ ଶିଖାଇଦିଏ,
ନିଜକୁ ବଞ୍ଚିରହିବାକୁ ଯିଏ ମତାଇଦିଏ,
ସେ ପ୍ରେମ।
ସେ ପ୍ରେମ ଈଶ୍ୱରଙ୍କର ସତ୍ତାକୁ !
ଆଉ,
ଅପରକୁ ସୁନ୍ଦର ଯାହା ଦେଖାଇଦିଏ,
ଅପରକୁ ଭଲପାଇବାକୁ ଶିଖାଇଦିଏ,
ଅପରକୁ ବଞ୍ଚାଇବାକୁ ମତାଇଦିଏ,
ତାହା ସେ ପ୍ରେମର ପ୍ରତ୍ୟୁତ୍ତର
ସତ୍ତାର ଈଶ୍ୱରଙ୍କୁ . . . !
ପ୍ରେମର ସବୁ ସମ୍ବନ୍ଧ ଯେ ଈଶ୍ୱରଙ୍କ ସହ,
ଆଉ ଜୀବନର ସକଳ ଉପଲବ୍ଧି ପ୍ରେମକୁ ଘେରି।

ସେଇଥିପାଇଁ ତ ମାଟି ଆକାଶ-ଉନ୍ମୁଖୀ କି ଆକାଶ ମାଟିମୁହାଁ ତା ଆଉ ଆଜି ପ୍ରଶ୍ନ ନୁହେଁ। ଆକାଶ ଓ ମାଟି ଆଜି ଅନ୍ୟୋନ୍ୟ ଅପେକ୍ଷାରେ। ପ୍ରେମ ସେମାନଙ୍କୁ ସକଳ ଦୂରତା ସତ୍ତ୍ୱେ ପରସ୍ପର ମୁଖାପେକ୍ଷୀ କରିଦେଇଛି, ଏ ସତ୍ୟ ଉଭୟଙ୍କଠାରେ ଉନ୍ମୋଚିତ ହୋଇଯାଇଛି।

× × × ×

ଗୌତମ ! ତୁମେ ଆଜି ଆପ୍ତକାମ ।

ତୁମେ କିନ୍ତୁ ସିଦ୍ଧାର୍ଥ, ଜନ୍ମସିଦ୍ଧ ।

*ଆଲୋକରୁ ତୁମର ଜନ୍ମ । ଆଉ ମୁଁ ଗୋପା, ଆଲୋକକୁ ଲାଳନ କରିଛି, ପରିପାଳନ କରିଛି । ମୋ ସତ୍ତାର ସଂଗୁପ୍ତ ଅଭ୍ୟନ୍ତରରେ ଯଥାସାଧ୍ୟ ତା'ର ସମ୍ଵହନ କରିଛି ।

ମୋ ଆଲୋକ ତୁମ ଓ ମୋ'ଠାରେ ଭିନ୍ନ ତ ନୁହେଁ ।

ରୂପବଦ୍ଧ ଜଗତରେ, ରୂପ ଆଧାରର ଭିନ୍ନତା ସତ୍ତ୍ୱେ ସେଇ ଆଲୋକମୟ ଚେତନାଭୂମିରେ ଯେ ଆମେ ଏକ ଓ ଅଭିନ୍ନ ।

ତୁମେ ପ୍ରଦୀପ୍ତ ଜ୍ଞାନସୂର୍ଯ୍ୟର ଜ୍ୟୋତିର୍ମୟ ଉଜ୍ଜ୍ୱଳତା, ଆଉ ମୁଁ ତା'ର ରଙ୍ଗୋଚ୍ଛଳ କିରଣଜାଳର ପ୍ରେମସ୍ନିଗ୍ଧ ମଧୁରତା ।

ପୃଥିବୀରେ, ସବୁ ବିଚ୍ଛିନ୍ନତା ଭିନ୍ନତା ଭିତରେ ବି ଏଇ ଏକ ଅଭିନ୍ନ ଅଦ୍ୱୟ ଉପଲବ୍ଧି– ତାହାହିଁ ତ ମୁକ୍ତି, ନିର୍ବାଣ, ମହାସୁଖ !!!

□ □ □

ରଚନାକାଳ – ୧୯୮୭, ଡିସେମ୍ବର, ବଜ୍ରକବାଟି, କଟକ ।
(ନଭେମ୍ବର ୮୮ / କୋଣାର୍କ – 'ବଜ୍ରଧରାର ସାଧନାସଂଗୀତ' ନାମରେ ପ୍ରକାଶିତ)

---

* ଗୋ – ବେଦରେ ଗୋ ଶବ୍ଦର ଅର୍ଥ ଆଲୋକରଶ୍ମି, ଦିବ୍ୟଜ୍ଞାନ ।
ଗୋପା – ଆଲୋକ-ପାଳିନୀ, ଉଷା, ଅଦିତି ।

# ଅହଲ୍ୟାର ରାତ୍ରି

"All that is transitory is only a symbol.
The inadequate here becomes event.
The indescribable here it is done.
The Eternal Feminine draws us on and upward."
(Goethe: Dr. Faustus)

(୧)

ଏ ଆକାଶକୁ ଆଲୁଅର ଘର ବୋଲି ମୁଁ ଜାଣିଥିଲି, ଆଲୁଅକୁ ସେଠି ଖୋଜିଥିଲି। ଆଲୁଅ ଜଳାଇବା ପାଇଁ ନିଜକୁ ଦୀପ ସଜାଇଦେଇଥିଲି।

ଆଲୁଅରେ ଭର୍ତ୍ତି ସେଇ ତୋରା ଆକାଶ ଭିତରୁ ଅଂଧାର ଏପରି ନିଘଂଚ ହୋଇ ମାଡ଼ିଆସିବ ବୋଲି କେବେ ଭାବିପାରିନଥିଲି। ଆକାଶର ଦିଗ୍‌ବିଦିଗ ଘେରି ଯେ ଅଂଧାରର କଳା ଦେହଟା ଏପରି ଭୟାନକ ଆବିର୍ଭାବରେ ଆଲୋକର ସବୁ ସଂଭାବନାତକ ମଧ ପୋଛିଦେଇଯିବ, ସେ କଥା ମୋ' ଆଲୋକ-ତୃଷିତ ଆଖି କିପରି ବିଶ୍ୱାସ କରନ୍ତା ?

ତା'ପରେ ତ ମୁଁ କେବଳ ଆକାଶର କଳାରଂଗଟି ହିଁ ଚିହ୍ନିଛି। ଆକାଶକୁ ରାତିର ଆକାଶ ବୋଲି ଜାଣିଛି। ହୁଏତ ସେ ଆକାଶ ମୋ ଆଖିପତାରେ କଳା ପଟିଟିଏ ଗାଢ଼କରି ବାନ୍ଧିଦେଇଛି କିମ୍ବା ମୋ ଆଖିଆଗରେ ଅନାବୃତ କଳା ଦେହଟିଏ ବିଛାଇଦେଇଛି।

ଆଲୁଅର ଆକାଶକୁ, ଚନ୍ଦ୍ରାଲୋକର, ସଂଧ୍ୟାତାରାର ଉଷାରୁଣର ସେ ଆକାଶକୁ ମୁଁ କ'ଣ ସବୁଦିନ ପାଇଁ ହରାଇଦେଇଛି ?

ଅହଲ୍ୟା-ପୃଥିବୀ କ'ଣ ଦେବତାର ଆକାଶରୁ ଆଲୋକର ଆଶୀର୍ବାଦ ଲୋଡ଼ି ପାତାଳର ଅଂଧାରି ନରକ ଭିତରକୁ ନିର୍ବାସିତ ହୋଇଯାଇଛି ? ଆକାଶ କ'ଣ ମିଥ୍ୟା ପ୍ରତିଶ୍ରୁତି ଦିଏ ? ଦେବତା କ'ଣ ଭୁଆଁ ବୁଲାଏ ? ପ୍ରଲୋଭିତ କରେ ? ଆଲୋକ କ'ଣ ଛଳନା କରେ ?

ଏ କେଉଁ ପ୍ରଲୋଭନର ଆଲୋକ-ଆଭାସ ମତେ ଏପରି ଶ୍ୱାସରୋଧୀ ବାଷ୍ପାଚ୍ଛନ୍ନତା ଭିତରେ ଅଂଧ କରି ରଖିଦେଲା ?

ଏ ପୃଥିବୀ କୁଆଡ଼େ ବସୁଂଧରା ! ମନର ମାଣିକ୍ୟମାନେ ଏଠି ବିଛିହୋଇଥାନ୍ତି। ଧରିତ୍ରୀ କୁଆଡ଼େ କଳ୍ପଲତା ! ଆଶାଭିଳାଷମାନେ ଫୁଲ ହୋଇ ମହକୁଥାନ୍ତି।

ପୃଥିବୀରୁ ଆଉ କ'ଣ ମିଳେ ନମିଳେ ତା ମୁଁ ଜାଣିନାହିଁ। କେହି କିଂତୁ ଏଠି ଗୋଟିଏ ପ୍ରାପ୍ୟକୁ ପାଇପାରନ୍ତି ନାହିଁ ବୋଲି ଜାଣିଛି। ଜୀବନର ସବୁ ଘଟଣା ଅନୁଭବମାନ ସେଇ ଗୋଟିଏ ଉପଲବ୍ଧି ପାଖକୁ ବାରମ୍ବାର ଫେରିଆସନ୍ତି। ଜନ୍ମଜନ୍ମାଂତରର ଧରି ତାକୁ ଲକ୍ଷ୍ୟ କରି ଜୀବନ ପୃଥିବୀ ସହ ସଂପର୍କର ସୂତ୍ର ନିର୍ଧାରଣ କରିବାକୁ ଚେଷ୍ଟା କରୁଥାଏ, ଆଉ ପୃଥିବୀ ବଡ଼ ସତର୍କତାର ସହ ବାରବାର ତାକୁ ସେଥିରୁ ବଂଚିତ କରି ରଖିବାର ଚକ୍ରାଘାତରେ ମୁହ୍ୟମାନ କରିଦେଉଥାଏ। ତାହା ପୃଥିବୀର ଆଘାତ ନା ଅକ୍ଷମତା ? ସେଇ ଦୁର୍ଲଭ ପ୍ରାପ୍ୟ ନିଜକୁ ହେଲା ନିକେ ନ୍ୟାୟ, ସୁବିଚାର, ବୁଝାମଣା।

କିଏ କାହାକୁ ନ୍ୟାୟ ଦେବ ଏଠି ? କିଏ କାହାର ବିଚାର କରିବ ? କିଏ କାହାକୁ ବୁଝିପାରିବ ?

କେଉଁ ନିକିତିରେ ଏ ପୃଥିବୀରେ ସବୁ ତଉଲା ହୁଏ କେଜାଣି, ଏଠି ଯେ ଅଂଧାର ସବୁବେଳେ ଆଲୁଅଠାରୁ ପୁରୁଣା; ରାତି ସବୁବେଳେ ଦିନଠାରୁ ଦୀର୍ଘାୟୁ !

ଅଂଧାର ଭିତରୁ ଯାହାର ଜନ୍ମ, ଅଂଧାର ଯାହାର ଜୀବନ, ଜୀବନାଂତରର ରୂପ ମଧ୍ୟ ସେଇ ଅଂଧାର ଛଡ଼ା ଆଉ କିଛି ରହସ୍ୟଭେଦ କରିପାରେ ନାହିଁ, ସେ ପୃଥିବୀ ପାଇଁ ଅଂଧାର ଏଡ଼େ ଅସହ୍ୟ ହୋଇପଡ଼େ କାହିଁକି ?

କାହିଁକି ଗୋଟାଏ ସୂର୍ଯ୍ୟସକାଳକୁ ଏ ଉନିଦ୍ର ଅପେକ୍ଷା ? କାହିଁକି ଏ ପୂର୍ବାଶାକ୍ଷ ଅଶ୍ରାଂତ ତପସ୍ୟା ?

କଳ୍ପାଂତରକୁ ରାତିର ନିଃଶ୍ୱାସଟିଏ ହୋଇ ବିତିଯିବାର ଦେଖିଲି। ସବୁ ବହଳ ଅଂଧାର ଅତଂନ୍ଦ୍ର ଆଖିପତାରେ ସଂଧ୍ୟାରୁ ସକାଳ ହୋଇ ଲଂବିଯିବା ବେଳେ ଅଂଧାରର ଛାଇ ତଳେ ଜାକିଜୁକି ହୋଇଗଲି।

ଦିନ ତ ଦିନ, ଜହ୍ନରାତିକୁ ବି ଭୁଲିସାରିଲିଣି। ଅଂଧାର ଛଡ଼ା, ସେ ଅନ୍ଧାରରେ ଆଖି ବୁଜିଦେବା ଛଡ଼ା ଆଉ କିଛି ଯେ ଜୀବନର ଭିନ୍ନ ରୂପ ଥାଏ, ତା କଳ୍ପନାରେ ମଧ୍ୟ ଧରାପଡୁନାହିଁ।

ଅନ୍ଧାରରେ ଏକାଏକା। ଛାଇମାନେ ବି କୁଆଡ଼େ ହଜିଗଲେଣି। ଆପଣାର ଏକୁଟିଆପଣକୁ ଜାବୁଡ଼ି ଧରି ତଥାପି ଖୋଜିହେଉଛି ଚିର ସହଚର ବୋଲି ଦିନେ ଆବୋରିଥିବା ସେଇ ଛାଇମାନଙ୍କୁ। ଆକାଶରେ ଏକା ଏକା ଜହ୍ନ ପରି– ମହାଶୂନ୍ୟର ଅଂଧାରରେ ନିଜର ନିଷ୍ଫଳ ଜ୍ୟୋସ୍ନାକୁ ବିଛାଇଦେଇ, ଆଲୁଅର ସାନ୍ତ୍ୱନାରେ / ଛଳନାରେ କିଛି ବେଳ ନିଜକୁ ଓ ଅପରକୁ ଭୁଲାଇରଖିବା– ଗଂଗାଧାରରେ ଏକା ଏକା ଡଂଗା ପରି, ରେଖାହୀନ ଆକାଶ ଓ କୂଳହୀନ ଲହରୀଙ୍କୁ ସବୁ ଭବିଷ୍ୟତ ସମର୍ପିଦେବା।

ଆକାଶ ! କାହିଁକି ମତେ ଏମିତି ଉଚ୍ଛନ୍ନ କରିଥିଲୁ ସେଦିନ, ଆଜି ଯଦି କାଦୁଅରେ ଆଣି ଫିଙ୍ଗିଦେବାର ଥିଲା ? କାହିଁକି କରିଥିଲୁ ଫୁଲ ଭଳି କୋମଳ, ଆଜି ଚାପିଦେଲୁ ପଥର ବୋଝରେ । କେଉଁ ଅଜଣା ନେଳି ତଳୁ ପଠାଇଦେଲୁ ଅଜସ୍ରବର୍ଣ୍ଣ ରୂପନଗରୀର ରହସ୍ୟମୟ ଇସାରା । କେଉଁ ସମୁଦ୍ରର ତରଂଗ ସ୍ୱନରେ ଶୁଣାଇଥିଲୁ ହର୍ଷୋଲ୍ଲାସର ସଂଗୀତ– ହାତୀ ଅଛି, ଘୋଡ଼ା ଅଛି, ଜହ୍ନ ଅଛି, ଫୁଲ ଅଛି, ପାନପାତ୍ର ଅଛି, ଅଛି ରସର ପାରାବାର ।

ତା'ପରେ ଉଠାଇନେଲୁ ଆକାଶସେପାଖ । ଘୂରାଇ ଘୂରାଇ ଗୋଟାଯାକ ଅନ୍ତରୀକ୍ଷ, ବୁଡାଇଦେଲୁ ଅତଳତଳ । ଅକସ୍ମାତ୍ ଶଯ୍ୟାଂତର । କର୍କଶତାର ଶେଯରେ ଠିଆକରିଦେଲୁ ଏ କି ଅତର୍କିତତାରେ ?

ଗୋଟିଏ ଅଂଧାରର ଅତଳଗହ୍ୱର– ଯାହାର ଚାରିପଟେ କାଂଥଟିଏ ବି ନାହିଁ ଖସିଯାଉଥିବାର ଅନୁଭବକୁ ବୁଝାଇଦେବାପାଇଁ । ନିଜର ଛାୟାଟିକକ ପର୍ଯ୍ୟନ୍ତ ସହଚର ନାହିଁ, କେବଳ ଛାତିର ରୁଂଧିହୋଇ ଆସୁଥିବା ନିଃଶ୍ୱାସ ପବନଟି । କେବଳ ଖସିଯାଉଥିବାର ଅସହାୟତାଟି ।

ଏ ପୃଥିବୀରୁ କ'ଣ କଥାମାନେ ସରିଗଲେ ? ସ୍ୱରମାନେ ନିଃଶେଷ ହୋଇଗଲେ ? ଶବ୍ଦମାନେ ଅନ୍ତରୀକ୍ଷରେ ମିଳାଇଗଲେ ? ସେ କାହିଁ, ଜୀବନ ଆପଣାକୁ ଛୁଇଁ ଦେଖିବାର ସେ ନିଶାଗ୍ରସ୍ତତା କାହିଁ ଯାହାପାଇଁ ଏ ପୃଥିବୀରେ ସବୁକିଛି ନିଜ ରୂପରେ ଖୋଜା ହେଉଥିଲେ, ଚିହ୍ନା ହେଉଥିଲେ ?

ଏ କ'ଣ ସେଇ ନିର୍ବେଦ ଚେତନାସ୍ତର, ଯେଉଁଠି ଆଉ କିଛି ବି ଅନୁଭବରେ ଛୁଇଁହୁଏନାହିଁ ? କେଉଁ ଦୁଃଖ ଏଠି ଯେମିତି ଦୁଃଖ ନୁହେଁ । ଏ ଭୂମିର ଦୁଃଖ ତୁଳନାରେ ଦୁଃଖ ନାହିଁ । ଉଚ୍ଚାରଣରେ, ହାବଭାବରେ, ସଂକେତରେ ଏହାକୁ ଶାରୀର କରି ପ୍ରକାଶିହେବନାହିଁ ।

ନିରାଶାର ଏ ଭୂମିରେ ଆଉ କିଛି ପ୍ରଶ୍ନ ନାହିଁ । ଯେମିତି ଉତ୍ତର ଆଉ କିଛି ମିଳି ପାରିବନାହିଁ ବୋଲି ଏକ ସ୍ୱତଃସିଦ୍ଧ ବାକୀ ସବୁ ପ୍ରଶ୍ନର ସଂଭାବନାକୁ ବି ଏଡାଇଦେଇଛି ।

ଏ ଭୂମି ନା ନିଦ୍ରାର ନା ଜାଗରଣର । ସୁଷୁପ୍ତିର ସ୍ୱସ୍ତି ମିଳିବ ନାହିଁ । ଚାହିଁ ଦେଖିବାକୁ ଆଖି ଆଗରେ ଦୁନିଆଁ ନାହିଁ । ଆଖି ଖୋଲା ବା ବନ୍ଦ ସେ ପ୍ରଶ୍ନ ଏଠି ପହଞ୍ଚେନାହିଁ ।

ଏ ଯଂତ୍ରଣାର ତୀବ୍ରତାକୁ କେଉଁ ଦୁଃସହ ଦୁର୍ବିପାକର ଯଂତ୍ରଣା ବି ଛୁଇଁପାରିବନାହିଁ । ଅଗ୍ନ୍ୟୁତ୍ପାତ, ବଜ୍ରାଘାତ, ଭୂକଂପ, ପ୍ରଳୟ ଝଂଜା, ସବୁ ତୀବ୍ରତାର ଘନୀଭୂତ ପ୍ରଚଣ୍ଡତାର ଅତୀତ ଯେ ଯଂତ୍ରଣା, ପ୍ରକୃତିରେ ତା'ର ପ୍ରକାଶରୂପ ନ ପାଇ ଜୀବନ ତାକୁ ନିର୍ବେଦତା ବୋଲି ଗ୍ରହଣ କରିନେଇଛି ।

ପ୍ରସ୍ତରୀଭୂତ ହୋଇଯିବାଟା ହିଁ ଯଦି ଜୀବନର ଏକମାତ୍ର ଭବିତବ୍ୟ ଥିଲା, ତା'ହେଲେ ରକ୍ତରେ ଏତେ ଉଷ୍ଣତା, ସ୍ନାୟୁରେ ଏତେ ଉଚ୍ଚାଟନ, ଚିତ୍ତରେ ଏତେ ଚଂଚଳତା ଦିନେ ଜାଗିଥିଲା କାହିଁକି ? କାହିଁକି ବଂଚିବାର ଉଦଗ୍ରତା ଆଶା ହୋଇ,

ଅଭିଳାଷ ହୋଇ, ସ୍ୱପ୍ନ ହୋଇ ମାଟିରୁ ଆକାଶ ପହଁରିଯାଉଥିଲା, ଯଦି ମୃତ୍ୟୁଠାରୁ ବଳି ନୀରବତାର ପଥର ବୋଝ ବହି ପଡ଼ିରହିବାର ଭାଗ୍ୟ ଥିଲା ?

ପତ୍ରର କଂପନଟିର ପର୍ଯ୍ୟଂତ ସୂକ୍ଷ୍ମତାକୁ ଧରିନେଇ ଯେଉଁ ହୃଦୟ ଦିନେ ବାତ ଆନ୍ଦୋଳିତ ଫୁଲପାଖୁଡ଼ା ପରି ଥରଥର ହୋଇଯାଉଥିଲା, ସେ ଆଜି ପ୍ରସ୍ତରର ନିର୍ବେଦତାରେ ନିଶ୍ଚଳ ଅକଂପିତ ?

ନିଆଁ ଫୁଲର ସବୁ ସୁକୁମାରତାକୁ ପୋଡ଼ି ଅଙ୍ଗାର କରିଦେବା ଭଳି ଆକାଶର ତାତି ପୃଥିବୀର ସବୁ କୋମଳତାକୁ ଚାଟି ଶେଷ କରିଦେଇଛି। ସବୁ ସୁନ୍ଦର ପ୍ରାପ୍ତିଗୁଡ଼ିକ କଳା ପୋଡାମାଟି ପାଲଟିଯାଇଛି।

ଲୁହମାନେ ଏମିତି ଶେଷ ହୋଇଯାନ୍ତି ? କଥାମାନେ ଏମିତି ଚୁପ୍ ହୋଇଯାନ୍ତି ? ଜୀବନ ଏମିତି ନିର୍ଜୀବ ହୋଇଯାଏ ? ମୃତ୍ୟୁଠାରୁ ବଳି ମୂହ୍ୟମାନ ଅହଲ୍ୟାର ପାଷାଣ ହୃଦୟରେ ତଥାପି କେଉଁ ଅବୋଧ ସଂବେଗ ଅନାଗତ ସକାଳ ଅପେକ୍ଷାରେ ଏକ ଅପହଂଚ ଦିଗନ୍ତ ପାଖେ ନିର୍ନିମେଷ ହୋଇଯାଇଛି ?

(୨)

ଅଂଧାରକୁ ଶେଷ ବୋଲି କେମିତି ମାନିନେବି ଯେତେବେଳେ ଆଲୁଅକୁ ଜୀବନର ଆରମ୍ଭ କାଳରେ ଭେଟିଛି ?

ଆଲୋକର ସେ ଭୋରବେଳାରେ ଜୀବନର ଆଦ୍ୟ ଆର୍ବିଭାବ ଯେଉଁ ବିରାଟ ପ୍ରଶ୍ନକୁ ସମ୍ମୁଖରେ ଭେଟିଥିଲା, ଯେଉଁ ବିପୁଳ ଅଂଗୀକାରକୁ ସ୍ୱୀକାର କରିନେଇଥିଲା, ତାହା ତ ସେ ଆଲୋକ ବ୍ୟତୀତ ସଂଭବ ହୋଇନଥାନ୍ତା।

ସେଇ ଆଲୁଅର ଭରସାରେ ଯେ ପୃଥିବୀର ଏ ରାତିକାଟିବା। ଦୂର ଦିଗ୍‌ବଳୟ ସେପାଖରୁ ଉଙ୍କିମାରୁଥିବା ରଶ୍ମିକଣାଟି ତା'ର ଆଖିର ଜ୍ୟୋତି ହୋଇ ତାକୁ ଅଂଧାର ଭିତରେ ବାଟଟିଏ କଢ଼ାଇନେବ ବୋଲି ଜୀବନ ଯେ ପୃଥିବୀକୁ ଆସିବାକୁ ସାହସ କରିଛି, ପୃଥିବୀରେ ଆଲୁଅର ଶିଖାଟିଏ ତଥାପି ଜଳାଇପାରିବ ବୋଲି ଅଣ୍ଟାଭିଡ଼ିଛି।

ଆଲୋକ ଯଦି ଅଛି, ଅଂଧାରର ନିରସନ ଯଦି ଅଛି ଏବଂ ଆଲୋକର ଆବିର୍ଭାବ ପାଇଁ ଅଂଧାର ପ୍ରଚ୍ଛଦପଟଟିଏ ମାତ୍ର, ଆଉ ସୃଷ୍ଟିର ଧାରାରେ ସେ ଅଂଧାର ତା'ର ବିକାଶର ସହଚର; ପ୍ରତ୍ୟକ୍ଷତାର ବିପରୀତରେ ଯଦି ପରୋକ୍ଷର ସ୍ୱୀକୃତି ସ୍ୱତଃସିଦ୍ଧ, ତେବେ ଏ ପୃଥିବୀ ପାଇଁ ଅପାର୍ଥିବ ଭବିଷ୍ୟତଟିଏ ଦୁରାକାଙ୍‌କ୍ଷା ହୋଇପାରେ, ଅସଂଭବ ନୁହେଁ।

ମୋ ଜୀବନର ଏଇ ଅଭିଶପ୍ତ ପ୍ରଳୟାର୍ତ୍ତ ମୂହୂର୍ତ୍ତରେ ପୃଥିବୀର ସେ ଅପାର୍ଥିବ ଭବିଷ୍ୟତକୁ ସଂଭାବନାହୀନ, ଜୀବନର ଅସଫଳ ଶେଷ ସଂଗ୍ରାମ ବୋଲି ପାଷାଣୀ ଅହଲ୍ୟା ମାନିନେବ ?

ପୃଥିବୀ ଆଦିମକାଳରୁ କି ଏକ ସ୍ୱପ୍ନର ସଂଭାବନାରେ ଉଚ୍ଚାଟିତ ହୋଇ ରହିଛି। ପ୍ରତିଟି ଧୂଳିକଣାରେ ସେ ଉଚ୍ଚାଟନ ଜଡତ୍ୱର ଅବରୋଧ ଠେଲି ସ୍ଫୁଟ ହେବାକୁ ବ୍ୟାକୁଳ ହେଉଥାଏ। ପ୍ରତିଟି ସମୀର ସ୍ୱନରେ ସେ ସ୍ୱପ୍ନର ପ୍ରତିଶ୍ରୁତି ଶବ୍ଦମୟ ହୋଇଯାଉଥାଏ।

ସୃଷ୍ଟିର ବିରାଟ ପ୍ରଶ୍ନବାଚୀ ସମ୍ମୁଖରେ ଜୀବନର ନତଜାନୁ ସ୍ୱୀକୃତି, ସେ ଯୁଗେ ଯୁଗେ ପୃଥିବୀରେ ଆବିର୍ଭୂତ ହୋଇ ଅସ୍ତିତ୍ୱକୁ ପ୍ରତିଷ୍ଠା କରିବ। ପ୍ରେମରେ, ଆନନ୍ଦରେ ସତ୍ୟର ଯେ ଚିନ୍ମୟ ପ୍ରତିଷ୍ଠା, ସେଥିପାଇଁ ସେ ସମର୍ଥ ଆଧାରଟିଏ ଖୋଜିବ। ଆପଣାକୁ ସଂଗ୍ରାମର ଯନ୍ତ୍ରଣାମୟ ଭୂମି ସଜାଇବ।

ନିଶ୍ଚେତନାର ଭୂମିରେ ଚେତନାର ଓଁକାର ଜାଗିବ। ଜଡ଼ ଜୀବନ-ଚଂଚ଼ଳ ହେବ। କ୍ଷୀଣ, କ୍ଷୁଦ୍ର, ଅସମର୍ଥ ମନେହେଉଥିବା ସଂକୁଚିତ ପୃଥିବୀ ଏକ ଉଦାର ବିପୁଳ ପ୍ରସାରଣର ଲୀଳାଭୂମି ହୋଇଉଠିବ।

ଏତେ ବଡ଼ ଆୟୋଜନରେ ମୋର ନିମିତ୍ତାର୍ଥ, ସାମାନ୍ୟ ପ୍ରୟୋଜନ, ମୁଁ ଅସ୍ୱୀକାର କରିଥାନ୍ତି କିପରି ?

ଏମିତି ଘଟଣା ଅଛି, ଯାହା ସୃଷ୍ଟିର ପ୍ରୟୋଜନରୁ ଘଟେନାହିଁ? ଏମିତି ଜୀବନ ଅଛି, ଯିଏ ସ୍ରଷ୍ଟାର ବିନା ସଂକଳ୍ପରେ ଧରାବତରଣ କରିଛି ?

ଗୋଟିଏ ଅହଲ୍ୟାର ହୃଦୟକୁ ପାଷାଣ ଭାରରେ ଚାପିଦେଲେ ପୃଥିବୀର ଅହଲ୍ୟା-ଭାଗ୍ୟ ଚିରଦିନ ପାଇଁ ନିଷ୍ଫଳ ହୋଇଯିବନାହିଁ।

ପଥର ତଳର ଝର ନିଶ୍ଚେ ଉତ୍ସାରିତ ହେବ। ପଥର ତଳେ ସେ ଝର ନହେଲେ ସୃଷ୍ଟି ହୋଇଥିଲା କାହିଁକି ?

ପ୍ରତିଶ୍ରୁତି ତ ରଖିବାକୁ ହେବ। ପରମ ଶାଶ୍ୱତ ପାଖେ ଅଂଗୀକାରବଦ୍ଧ ସତ୍ତା, ନିତ୍ୟ-ସତ୍ୟକୁ ପାର୍ଥିବ ପ୍ରକାଶଭୂମିରେ ଉପଲବ୍ଧିର ବାସ୍ତବତାରେ ରୂପାନ୍ତରିତ କରିବାପାଇଁ ସେ ଦୁଃଖର ସାଧନା କରିବ, ନିଜକୁ ସ୍ୱପ୍ନ ସଂଭାବନା ଉଦ୍ୟମ ଆଉ ନିରାଶା-ବ୍ୟାକୁଳତା ନିରୁତ୍ସାହର ଘାତ-ପ୍ରତିଘାତମୟ ସଂଗ୍ରାମ-ଭୂମିରେ ରୂପାନ୍ତରିତ କରିବ, ନିଷ୍ପନ୍ଦ ଜଡ଼କୁ ସ୍ପନ୍ଦନ-ସ୍ଫୁରିତ କରି ଦେଖିବ। ବିରୋଧ ଭିତରେ ଅସ୍ତିତ୍ୱ ପ୍ରତିଷ୍ଠାର ସୂକ୍ଷ୍ମ ମାର୍ଗରେ ଅନେକ ପଥବିସ୍ମରଣ ଆସିବ, ପଥରୋଧ ବି ହେବ। ସେ ସବୁ ଅତିକ୍ରମ କରିବାର, ବାହ୍ୟ ବିରୋଧକୁ ସଂଘାତ ଏବଂ ଅଂତଃ ବିରୋଧକୁ ଆୟତ୍ତ କରିବାର କୌଶଳ ହାସଲ କରିବ।

ଆଭୂମି ମଥା ନତ କରି ମୁଁ ଶାଶ୍ୱତର ସଂକଳ୍ପକୁ ମୋ ଅଭିଳାଷର ସ୍ୱୀକୃତି ସହଯୋଗ ଦେଲି– "ମୋ ଦେହକୁ ଶଯ୍ୟା କର, ମୋ ପ୍ରାଣକୁ ପ୍ରବାହ କର। ମୋ ଚିତ୍ତକୁ ଗତିଛନ୍ଦ ଦିଅ। ଅନୁଭବର ଶଯ୍ୟା, ରସର ପ୍ରବାହ, ଗତିର ବେଗ। ସେ ଦେହ ତଟବଂଧନକୁ ମାନିନେବନାହିଁ। ପ୍ରୟୋଜନୀୟ ପ୍ରବାହ ଶଯ୍ୟା ଖୋଜିନେବ। ତଟ ଲକ୍ଷ୍ୟ ନୁହେଁ, ପ୍ରବାହ ବି ଲକ୍ଷ୍ୟ ନୁହେଁ। ସାଗରର ଅଭିମୁଖେ ସ୍ରୋତର

ପ୍ରବାହରେ ସେମାନେ କେବଳ ଉପଲକ୍ଷ୍ୟ ଧାରାପ୍ରବାହକୁ ନିର୍ଦ୍ଦିଷ୍ଟ, ଦ୍ରୁତ ଓ ଅଗ୍ରସରପର କରାଇନେବାପାଇଁ ତଟର ପ୍ରୟୋଜନ ମାତ୍ର।

ମୋର ପ୍ରାଣ ମଧ୍ୟ ତା'ର ସମଗ୍ର ପ୍ରବାହ-ଆବେଗକୁ ଗୋଟିଏ ସ୍ରୋତରେ ସୀମାବଦ୍ଧ ରଖିବନାହିଁ। ଶାଖାପ୍ରଶାଖାରେ ବୋହିନେବ। ଅନେକ ଶୁଖିଲା ଛାତିର ମରୁଭୂମିକୁ ଶସ୍ୟମଂଜୁଳ କରିଦେବ। ଅନେକ ତୃଷିତ କଣ୍ଠକୁ ଶୀତଳ ତୃପ୍ତ କରିଦେବ। ମୋ ରସର ଝରଣା ଶୁଖି ଯିବନାହିଁ। ଅନେକ ଉପନଦୀର ଜଳ ମୋର ଶଯ୍ୟାକୁ ପ୍ରସାରିତ ପରିପୂର୍ଣ୍ଣ କରିଦେବ। ଆରମ୍ଭ ବେଳାର କ୍ଷୁଦ୍ର ଅନୁଭବର କ୍ଷୀଣ ହୃଦୟ ଭାବବିପୁଳତାରେ ଅଗାଧ ଗହନ, ଅକୂଳ ବିପୁଳ ହୋଇଯିବ। ସମୁଦ୍ରରେ ପହଞ୍ଚିବା ପୂର୍ବରୁ ମୋ ଜୀବନ ସମୁଦ୍ରାୟିତ ହୋଇଯିବ।

ଆଉ ମନ! କୌଣସି ଶିଳାସଂକଟ ସମ୍ମୁଖରେ ନିରୁତ୍ସାହ ହେବନାହିଁ। ସିକତାପ୍ରାନ୍ତରରେ ଶୁଖିଯିବନାହିଁ। ସମୁଦ୍ରର ଆକର୍ଷଣକୁ ବିସ୍ମରଣ ହେବନାହିଁ। ସାମୁଦ୍ରିକ ଭବିଷ୍ୟତ ସଂପର୍କରେ ସନ୍ଦିହାନ ହେବନାହିଁ, ସଂଶୟାଚ୍ଛନ୍ନ ହେବନାହିଁ।

ପୁଣି ସେ କେଉଁଠି ଅଟକିଯିବ ନାହିଁ। ପ୍ରଲୋଭନମାନଙ୍କର ସୁଖଶଯ୍ୟାରେ ଶୋଇପଡ଼ିବନାହିଁ। କେଉଁ ମନୋରମ ତଟପ୍ରାଂତରେ ଠାକିଯିବନାହିଁ। କେଉଁ ଗଣ୍ଡ କୁହୁକରେ ସମ୍ମୋହନରେ ଭ୍ରମିଯିବନାହିଁ। କେଉଁଠି ବଂଧା ପଡ଼ିବ ନାହିଁ। ମାତ୍ର କାହାରିକୁ ଆଡ଼େଇ ଯିବନାହିଁ।

ଶଯ୍ୟାବୁକୁ କିଭଳି ନିଦର ଛାତି, ଗଣ୍ଡ କୁହୁକ କିଭଳି ମଧୁର ଭ୍ରାଂତି ସେ ସବୁକୁ ସେ ଅନୁଭବରେ ଅତିକ୍ରମ କରି ଆଗକୁ ଯିବାର ରାସ୍ତା ଖୋଜିବ।

ଏ ସୃଷ୍ଟିରେ କାହାରିକୁ ଆଡ଼େଇ ଯାଇ ତା'ଠାରୁ ନିସ୍ତାର ମିଳେନାହିଁ। ମିଛ, ଭ୍ରାଂତି କହି ବାଟ କାଟି ଚାଲିଗଲେ ସେଇମାନେ ପୁଣି ମହାମିଛ, ମହାଭ୍ରାଂତିର ଦୁର୍ଲଂଘ୍ୟ ପ୍ରତିରୋଧ ହୋଇ ଆଗରେ ଠିଆହୋଇଯାଉଥିବେ। କାୟାଠାରୁ ଛାୟା ବିପୁଳକାୟ ହୋଇ ଡରରେ ଥରାଉଥିବେ।

'ମିଛ' ବୋଲି କିଛି ଆଖିବୁଜିଦେବାକୁ ନୁହେଁ; ସତ୍ୟର କେତେ କ୍ଷୁଦ୍ର / ବୃହତ୍ ଅଂଶରେ ସବୁକିଛିର ପ୍ରତିଷ୍ଠା ବା ଆସ୍ଫାଳନ ସେତିକି ବୁଝିବା ପାଇଁ ତ ପୃଥିବୀ ବଂଚିବାର ଯୁଗଯୁଗାନ୍ତ କ୍ଳେଶ ଉଠାଇଚାଲିଛି।

ତୁମେ ମତେ ତୁମର ଶ୍ରେଷ୍ଠ ସର୍ତ୍ତଟି ଶୁଣାଇଦେଲ ଯେ କୌଣସି କ୍ଳେଶକୁ ମୁଁ ନାହିଁ କରିଦେବି ନାହିଁ। ସବୁ ନାହିଁକୁ ଅନୁଭବର ଅସ୍ତିବାଚକ ମାର୍ଗରେ ହିଁ ଅତିକ୍ରମ କରିବି।

ବିନିମୟରେ ମୁଁ ତୁମକୁ ମୋର ଏକମାତ୍ର ଅନୁଯୋଗ ଦେଲି, ଜୀବନସଂଗ୍ରାମର ଭୟଂକର, କ୍ଳେଶକର ଦୁଃସ୍ଥିତିର ମୁହୂର୍ତ୍ତମାନଙ୍କରେ ତୁମେ କିଂତୁ ଯେମିତି ମୋ ପାଖେ ପାଖେ ରହିଥିବ ସାହସ ହୋଇ, ଶକ୍ତି ହୋଇ, ଧୈର୍ଯ୍ୟ ହୋଇ।

ଅଗ୍ନିକୁଣ୍ଡରେ ପଶି ମୁଁ ଭସ୍ମ ହୋଇଯିବି ନାହିଁ– ଏ ପ୍ରତିଶ୍ରୁତି ମୁଁ ଦାବୀ କରିନାହିଁ। ଭସ୍ମକଣାରେ ମଧ୍ୟ ତୁମ ବିଭୂତିର ମହିମା ପ୍ରସରିଯିବ, ଏତିକି ଅନୁଗ୍ରହ ଲୋଡ଼ିଛି।

ପ୍ରବାହରେ ଭାସିଯିବି ନାହିଁ, ପବନରେ ଉଡ଼ିଯିବି ନାହିଁ, ଆଘାତରେ ରକ୍ତାକ୍ତ ହେବିନାହିଁ– ଏଭଳି ସର୍ତ୍ତ ଲୋଡ଼ିବାକୁ ସତ୍ତାର ଅଧିକାର ନାହିଁ। ବରଂ ସେ ଭାସିବ, ଉଡ଼ିବ, ରକ୍ତସ୍ନାତ ହେବ, ପୋଡ଼ି ପାଉଁଶ ବି ହୋଇଯିବ; ଆଉ ପ୍ରତ୍ୟେକଟି ଦାରୁଣ ସଂଘାତମୟ ମୁହୂର୍ତ୍ତରେ ସେ ତୁମପାଇଁ ସତ୍ୟୋଦ୍ଧାର କରୁଥିବା ସଂଗ୍ରାମୀ ସୈନିକଟିର ପରିଚୟପତ୍ରଟି ଛାତିରେ ଗୁଞ୍ଚି ରଖିଥିବ।

ବାଧା ବିଘ୍ନ, ବିପଦ, ଅଭିଶାପ ଏମାନେ ତ ପୃଥିବୀର ଅସହାୟତା, ଖର୍ବରୂପର ଦୟନୀୟତା ମାତ୍ର। କ୍ଷୁଦ୍ର କଳସୀଟିରେ ସାମୁଦ୍ରିକ ପ୍ରବେଗକୁ ବନ୍ଦୀ କରି ନପାରିବାର ଅସମର୍ଥତା, ପ୍ରବଳ ତରଙ୍ଗୋଚ୍ଛ୍ୱାସରୁ ଆତ୍ମରକ୍ଷା କରିବାର ସଂତରଣ-କୌଶଳଟି ହାସଲ କରିନଥିବାର ଅପାରଗତା ଯେ ଆକୁଳତା ଓ ସଂତାପରେ ଦହିହୋଇଯାଉଥାଏ, ସେଇ ରିକ୍ତତାର ରାହୁରୋଷାୟିତ ପ୍ରତିଚ୍ଛାୟା ମୋର ଏ ପ୍ରସ୍ତରୀଭୂତ ଭାଗ୍ୟ !

ମାତ୍ର ସତ୍ୟକୁ, ସୁନ୍ଦରକୁ, ପ୍ରେୟକୁ ପାଇବାର ଜେଉଁ ଶ୍ରେୟ ବାଟ ଅଛି ଓ ତା'ପାଇଁ କି ସାମର୍ଥ୍ୟ ଲାଭ କରିବାକୁ ହୁଏ, ସେକଥା ଜାଣିବାକୁ ହୁଏତ ପୃଥିବୀକୁ ସମୟ ଲାଗିବ। ପୃଥିବୀରେ ଜୀବନକୁ ସଂତାପର ଅନଳକୁଣ୍ଡରେ ଯଜ୍ଞସ୍ନାନ କରିବାକୁ, ବିଷ-ପାରାବାରରେ ଅବଗାହନ କରି ଅମୃତ କଳସୀ ସଂଧାନ କରିବାକୁ ହେବ।

ପୃଥିବୀ ଅସମର୍ଥ ବୋଲି ତା'ର ଆଶାଭିଳାଷ କିନ୍ତୁ 'ଅସଂଭବ'ର ଡିନିଗାର ଭିତରେ ସଂକୁଚିତ ରହିଯିବନାହିଁ। ସେଥିପାଇଁ ଦୁର୍ମଦ ବାସନାବେଗର ପ୍ରମତ୍ତ ପୀଡ଼ନ କି କ୍ଷୁବ୍ଧ ରୁଷ୍ଟ ବିଚାରର ଅଧୈର୍ଯ ଅଭିଶାପ ଜୀବନପ୍ରବାହକୁ ଶୁଷ୍କ କରିଦେବାରେ ଯେତେ ଆତ୍ମତୃପ୍ତି ଖୋଜିଲେ ବି ସତ୍ୟପ୍ରକାଶର କାଳାଂତରବ୍ୟାପୀ ଦୁସ୍ତର ସାଧନା ସ୍ତବ୍ଧ ରହିଯିବନାହିଁ।

ମନ, ପ୍ରାଣ, ଦେହ, ଜୀବନକୁ ଆପଣା ସୁଖ-ସଂଭୋଗ-ସନ୍ତୋଷ ପାଇଁ ଆତ୍ମସାତ୍ କରୁଥିବାଯାଏ ସେ ସତ୍ୟସାଧନା ପୂର୍ଣ୍ଣ ହୋଇପାରିବ ନାହିଁ। ତଥାପି ଜୀବନ ମନ-ପ୍ରାଣ-ଦେହର କ୍ରୀତଦାସତ୍ୱକୁ ଚିରଦିନ ସ୍ୱୀକାର କରିବନାହିଁ।

ଦେହଧାରୀ, ପ୍ରାଣଧାରୀ, ମନର ବିଚାର ଭିତରେ ବଂଚୁଥିବା ମଣିଷ ଭିତରେ, ମୋ ଭିତରେ ଓ ମୋ ଭଳି ଆଉ ସମସ୍ତଙ୍କ ଭିତରେ ପରମ ସତ୍ତା ଆମର ପାର୍ଥିବ ଖର୍ବତାକୁ, ଅସହାୟତାକୁ, ଦୁର୍ବଳତା ଓ ପଥଭ୍ରାଂତିର ଦୁର୍ଭାଗ୍ୟକୁ ହୁଏତ କିଛିକାଳ ମାନିନେବାକୁ ବାଧ ହେବ। ହୁଏତ ପୃଥିବୀର କାଳମାତ୍ରାରେ ତାହା ବହୁଯୁଗ, ମାତ୍ର ଅନନ୍ତକାଳର ପରିଭାଷାରେ –

ସେ ତ ଏକ ମୁହୂର୍ତ୍ତମାତ୍ର !

ମୋ ସତ୍ତ୍ୱେ, ମୋ ପରେ, ଦୈହିକ, ପ୍ରାଣିକ, ମାନସିକ ପ୍ରତିବଂଧକୁ ଅତିକ୍ରମ କରି ପୃଥିବୀର ଶାଶ୍ୱତ-ପ୍ରକାଶର ତପସ୍ୟା ଅତି ସଂତର୍ପଣରେ ଅବ୍ୟାହତ ରହିଥିବ।

ମୁଁ ଅହଲ୍ୟା, ଏ ପୃଥିବୀର ପାର୍ଥିବ ପ୍ରେମର ପ୍ରସ୍ତରୀଭୂତ ଭାଗ୍ୟ। କିନ୍ତୁ ସାମୟିକା। ତାହା ପୃଥିବୀର ଶେଷ ଭବିଷ୍ୟତ, ସମୁଦାୟ ଭବିଷ୍ୟତ ନୁହେଁ।

ଭାଗ୍ୟ ପଥର ହୋଇପାରେ, ଭବିତବ୍ୟ କିନ୍ତୁ ପଦନଖସ୍ପର୍ଶର କୋମଳତା।

ପଥର ଭିତରେ କୋମଳତମ ପ୍ରାଣସ୍ପଂଦନ ଜାଗରଣ ବେଳାରେ କାଳଜୟୀ ପ୍ରେମର ଯେ ମହୋତ୍ସବମୟ ଅଭିଷେକ ଘଟିବ, ତା କିନ୍ତୁ ମନ ପ୍ରାଣ ବା ଦେହର ପଥପ୍ରାଂତରେ ନୁହେଁ, ହୃଦୟର ନିଭୃତ ପୁଷ୍ପାସନରେ !

ସେ ପରମ ପ୍ରେମର ତୀର୍ଥ ମନ୍ଦିରରେ ପହଞ୍ଚିବାର ରାସ୍ତା ଯେ କାମନାବାସନାର ଅଂଧାରିତ ଚୋରାଗଳି ନୁହନ୍ତି କି ନିଗ୍ରହ ବିରାଗର କଣ୍ଟକାବୃତ ଗିରିପଥ ନୁହନ୍ତି, ଅନୁରାଗର ରାଜପଥରେ ସେ ପ୍ରେମର ଦର୍ପିତ ସଘୋଷ ଶୋଭାଯାତ୍ରା। ସତ୍ୟ ସୁନ୍ଦର ସେ ପ୍ରେମର ଚିନ୍ମୟ ଉଦ୍‌ଭାସନରେ ପୃଥିବୀର ଇହ ପର ସବୁ ଖର୍ବତାର ଗ୍ଲାନିମୁକ୍ତ ହୋଇଯିବ।

ପୃଥିବୀ ଆଚମ୍ବିତ ହୋଇଯିବ। ଆକାଶ ବି ସ୍ତବ୍ଧ ରହିଯିବ, ମୁହୂର୍ତ୍ତେ। ଏ ଅଭାବନୀୟ ଭାଗ୍ୟକୁ ହୁଏତ କେହି କିଛି ବୁଝିପାରିବେ ନାହିଁ।

ପରମ ପ୍ରେମର ବରାଭୟ ସ୍ମିତି, ପୃଥିବୀର ଖର୍ବ ବିଚାରର ଉର୍ଦ୍ଧ୍ୱରେ ଜୀବନର ମହିମ୍ନ ଉଜ୍ଜ୍ୱଳ ରୂପ-ଉଦ୍‌ଭାସ ! ଅହଲ୍ୟା ଆଉ ଇନ୍ଦ୍ରିୟ-ଭୋଗ୍ୟା ଶରୀରିଣୀ ମାତ୍ର ନୁହେଁ, ଗୌତମ-ଅନୁଗୃହୀତା ଅଂଗନଆବଦ୍ଧା, ଗୃହସାଜକାରିଣୀ ଅଂଗନାମାତ୍ର ନୁହେଁ। ଅହଲ୍ୟା ଅନନ୍ତଜୀବିନୀ ନାରୀସତ୍ତା। ଶାଶ୍ୱତର ସହଚାରିଣୀ, ଅସ୍ତିତ୍ୱର ପ୍ରକାଶ ସାଧନାରେ ଉତ୍ସର୍ଗିତ ସତ୍ତା, ପୃଥିବୀର ଖର୍ବତାକୁ ଜାଣି ତଥାପି ଜନ୍ମ ନେବାକୁ, ଖର୍ବତାର ଦୋଷ-ଦୁଷ୍ଟ ହେବାକୁ ଓ ପୃଥିବୀକୁ ଖର୍ବତା-ମୁକ୍ତ କରିବାକୁ କ୍ଲେଶ ବରଣ କରିନେଇଥିବା ମୁକ୍ତିପିପାସୁ ମାନବାତ୍ମାଟିଏ।

ବିନା ଯଂତ୍ରଣାରେ ଜୀବନର ଆବିର୍ଭାବ କ'ଣ ଘଟିପାରେ ? ବିନା କ୍ଲେଶରେ ସତ୍ୟର କେଉଁ ରୂପର ପ୍ରତିଷ୍ଠା ଘଟିପାରେ ?

ପୃଥିବୀର ମୁହୁର୍ମୁହୁ ଯଂତ୍ରଣା, ଆପଣାର ଖର୍ବତ୍ୱକୁ ଚରମ ବୋଲି ମାନିନେଇ ନପାରିବାର ଶ୍ୱାସରୋଧ୍ୟ ଯଂତ୍ରଣା, ଆପଣାର ବର୍ତ୍ତମାନକୁ ସ୍ଥିତାବସ୍ଥାକୁ ଅତିକ୍ରମ କରିବାର ଅକ୍ଳାଂତ ତପଃକ୍ଲେଶ, ପୃଥିବୀର ସଂତାନ ମଣିଷକୁ ହିଁ ତାହା ସାଧନ କରିବାକୁ ପଡ଼େ।

ପୃଥିବୀର ଉତ୍ତରଣ ସାଧନାରେ ତା'ର ସତ୍ତାଂଶ ରୂପେ ମୁଁ ଯେ ପୃଥିବୀ ପାଖେ, ନିଜପାଖେ ଓ ଅପାର୍ଥିବ ଭବିଷ୍ୟତ ପାଖେ ପ୍ରତିଶ୍ରୁତିବଦ୍ଧ; ତାକୁ ଅସ୍ୱୀକାର କରି ମୋର ନିଷ୍ଫଳ ଦୁର୍ଭାଗ୍ୟକୁ ପୃଥିବୀର ଭବିତବ୍ୟ ବୋଲି ମାନିନେବି ? ଆଉ ପୃଥିବୀର ଭାଗ୍ୟକୁ ବି ବିଡ଼ମ୍ବିତ କରିଦେବି ?

ଯେତେବେଳେ ଏହିପରି ମାନିନେବାର ଦୁର୍ବଳତା ପୃଥିବୀର ଜୀବ ସ୍ୱୀକାର କରିଛି, ନିଜ ଖର୍ବତାର ଦୋହାଇ ଦେଇଛି, ସେତେଥର ପୃଥିବୀର ଭବିଷ୍ୟତ ବିଡ଼ମ୍ବିତ ହୋଇଯାଇଛି। ପୁଣି ଜୀବନର ଆୟୋଜନ, ଜନ୍ମ ହେବାର ଆୟୋଜନରେ ତାକୁ ଯୁଗଯୁଗାନ୍ତ ଅପବ୍ୟୟ କରିବାକୁ ହୋଇଛି।

ପୃଥିବୀର ଭାଗ୍ୟ ପୃଥିବୀ ନିଜେ ମଧ୍ୟ ନୁହେଁ।

ମୋର ଭାଗ୍ୟ ଇନ୍ଦ୍ର ନୁହନ୍ତି, ଗୌତମ ନୁହନ୍ତି, ମୋର ଅହଲ୍ୟାତ୍ୱ ମଧ୍ୟ ନୁହେଁ।

ଇନ୍ଦ୍ର, ଗୌତମଙ୍କୁ ମାନିନେଇଥିଲେ ମୁଁ ମୋର ଅହଲ୍ୟାତ୍ୱରୁ ମଧ୍ୟ ମୁକ୍ତି ପାଇ ନଥାନ୍ତି। ପୃଥିବୀ ପାଇଁ କେଉଁ ମୁକ୍ତିର କଥା କହିଥାନ୍ତି ?

ଏବଂ ଇନ୍ଦ୍ର, ଗୌତମଙ୍କୁ କେନ୍ଦ୍ରକରି ମୋ ଜୀବନରେ ବିପର୍ଯ୍ୟୟମାନ ଆସିନଥିଲେ ଅହଲ୍ୟାର ଭାଗ୍ୟାଂତରର ସଂଭାବନା ମଧ୍ୟ ଘଟିନଥାନ୍ତା।

ମୋର ଅହଲ୍ୟାତ୍ୱ ଅଭିଶପ୍ତ ହେବ ଏବଂ ଶାପଯୁକ୍ତ ହେବ, ପୃଥିବୀ ତା'ର ଖର୍ବତାକୁ ଆବିଷ୍କାର କରିବ ଏବଂ ଅତିକ୍ରମ କରିବ।

ଗୋଟିଏ ଅହଲ୍ୟାର ବିଫଳତାକୁ ଅହଲ୍ୟା-ପୃଥିବୀ ଯୁଗାନ୍ତରର ସଫଳତାକୁ ପାଦ ଥାପିବା ପାଇଁ ପାହାଚଟିଏ ସଜାଇଦେବ।

(୩)

ଗ୍ରଂଥିମୋଚନର ସେ ମୁହୂର୍ତ୍ତଗୁଡ଼ିକ। ନିଜକୁ ଆବିଷ୍କାର କରିବାର ସେ ଦାରୁଣ ରକ୍ତାକ୍ତ ମୁହୂର୍ତ୍ତଗୁଡ଼ିକ !

ପ୍ରାଣପ୍ରବାହର ସେ ଦୁର୍ବାରତା। ଉଦ୍ଦାମତା। ସମୁଦ୍ର ଯେପରି ଅନନ୍ତ ଲହରୀର ଝାଁପ ଦେଇ ସମୁଦାୟ ବେଳାଭୂମିକୁ ଆଶ୍ଳେଷିନେବ। ଯେମିତି ଆକାଶ-ଝଲସା ବିଦ୍ୟୁତ୍ ଶିଖାଟିଏ ପୃଥିବୀର ତଳ ଅତଳ ଭେଦି ଶିହରଣଟିଏ ଥରାଇଦେବ।

ସବୁ ଦୁର୍ନିବାର ପ୍ରାଣାବେଗ ଯେ ମୁହୂର୍ତ୍ତ-ନିଃଶେଷିତ, ଅନିମେଷ କାଳକୁ ମୁହଁ ବୁଲାଇଦେଇ ସେ ମୁହୂର୍ତ୍ତକୁ ଏତେ ପ୍ରାଣାଂତକ ଜାବୁଡ଼ି ଧରିବାକୁ ହୁଏ କାହିଁକି ?

ମୋ ଭିତରେ ପ୍ରାଣ-ପ୍ରବେଗର ଯେ ଉଦ୍ଦାମତା, ଆଉ ସଂତର୍ପଣ, ପ୍ରକାଶ-ଭୀତ, ସଂତ୍ରସ୍ତ ସଙ୍କୁଚିତ ତଥାପି ସଂଗୁପ୍ତ ଜ୍ୱାଳାମୁଖୀ ପରି ଉଦ୍‌ଗାର-ଅଧୀର ମୋର ତରୁଣ ପ୍ରେମର ଅଚରିତାର୍ଥ କାମନା ସମଗ୍ର ଇନ୍ଦ୍ରିୟକୁ ଉଚାଟିତ କରି ଯେଉଁ ରୂପ ଐଶ୍ୱର୍ଯ୍ୟମୟ ପରିଚୟଟିକୁ ଆବାହନ କରିଥିବ, ସେଇ ତ ସୁରେଶ୍ୱର ଇନ୍ଦ୍ର !

ଇନ୍ଦ୍ର ! ଐଶ୍ୱର୍ଯ୍ୟର ଦେବତା, ସୌନ୍ଦର୍ଯ୍ୟର ଦେବତା, ଶକ୍ତିର ଦେବତା – ଆଉ ଭୋଗର ଦେବତା ବି। ରୂପରଂଗରସକୁ ଉପଭୋଗରେ ଆସ୍ୱାଦନ-ମଧୁର କରି ବୁଝିବାର ମଂତ୍ର-ଦେବତା।

ଜୀବନର ନୀରବ ବୀଣାତାରରେ ସୁରଟିଏ ଝଂକାରିତ ହୋଇଉଠିବାକୁ ଯେ ଅପେକ୍ଷା କରିଥାଏ, ସେ ତ କାହାର କରାଂଗୁଳିର ସସ୍ନେହ ଚାଳନାକୁ ଚାହିଁରହିଥାଏ। ଫୁଲଟିଏ ଫୁଟିପାରେ, ଲୋଡ଼ା ମାଟିର ଉଷ୍ଣ କୋଳ। ବାଦକ ପଛେ ଆପଣା ପାଇଁ ବଜାଉ, ମାଳି ଆପଣା ପାଇଁ ଫୁଲ ଫୁଟାଉ, ବାଜିଉଠିବାର ଉଚ୍ଛ୍ୱାସ, ଫୁଟିଉଠିବାର ଉଲ୍ଲାସଟି ସ୍ୱୟଂ ପ୍ରାଣର।

ଧୂଳିକଣାଟିରେ, ପବନର ଛୁଆଁଟିରେ, ଜଳବିନ୍ଦୁଟିରେ, ସୁରତାରଟିରେ ଜୀବନର କି ଉଲ୍ଲାସ ଭରିରହିଛି, ତା'ରି ପ୍ରଥମ ସୁରଝଂକାର ବାଜିଉଠିଥିଲା ଯାହା କରସ୍ପର୍ଶରେ

ସେ ଇନ୍ଦ୍ର କି ଗୌତମ ତାହା ପ୍ରଶ୍ନ କରିବାର ଅବକାଶ ସେ ମୁହୂର୍ତ୍ତ ପାଖରେ ନଥିଲା ।

ସେଦିନର ସମୟ ତ ଏକ ବିଚିତ୍ରବର୍ଣ୍ଣା ଋତୁ ଥିଲା । ସେ ପୃଥିବୀ ଏକ ମାଲ୍ୟାଣୀ-ପୃଥିବୀ ଥିଲା । ବାଳଭାନୁର ସୁନାରଂଗରେ ସେ ଆଉ ଟିକେ ସ୍ନିଗ୍ଧତା ମାଖିଦେଇଥିଲା । ଆକାଶକୁ ଆଉ ଟିକେ ନେଳି, ଲତାପତ୍ରଙ୍କୁ ଆଉ ଟିକେ ଗହଳ, ଅରଣ୍ୟକୁ ଆଉ ଟିକେ ଶ୍ୟାମଳ ଶବଳ କରିଦେଇଥିଲା । ପକ୍ଷୀ କଣ୍ଠରେ ମାଦକତା ଭରିଦେଇଥିଲା । ଫୁଲ ପାଖୁଡ଼ାଙ୍କୁ ଅପୂର୍ବ ସାଜରେ ଗୁଛିଦେଇଥିଲା । ଦିଗ୍‌ବିଦିଗ ଉନ୍ମନତା ଭରିଯାଇଥିଲା । ଏକ ଶିହରଣ, ଏକ ବିହ୍ୱଳତାର ନିଶା ଚଖାଇ ସେ ମତେ ତନ୍ଦ୍ରାଚ୍ଛନ୍ନ କରି ରଖିଥିଲା ।

ବହୁବାର ଋଷିକଣ୍ଠରୁ ତତ୍ତ୍ୱ ଶୁଣିଥିଲି । ସୌନ୍ଦର୍ଯ୍ୟର ତତ୍ତ୍ୱ, ମାଧୁର୍ଯ୍ୟର ତତ୍ତ୍ୱ, ପ୍ରେମର ତତ୍ତ୍ୱ । ଶୁଣିଥିଲି ସେମାନେ ଏକ ଓ ଏକମାତ୍ର ସତ୍ୟ । ପୁଣି ଶୁଣିଥିଲି ମଣିଷର ଜୀବନ ସେଇ ତତ୍ତ୍ୱକୁ ଅନୁଭବର ସତ୍ୟରେ ବୁଝିବାର ସାଧନା । ପ୍ରତ୍ୟେକ ମଣିଷକୁ ସେଇ ସତ୍ୟକୁ ଧାରଣ କରିବାର ଆଧାରଟିଏ ହୋଇ ଜନ୍ମ ହେବାକୁ ପଡ଼େ । ମାତ୍ର ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ପ୍ରେମ କେଉଁ ଅଦେଖା ଈଶ୍ୱର ପରି ମୋର ଅପହଂଚ ଥିଲେ ।

ମୁଁ ଜାଣିଥିଲି ଗଛରେ ଫୁଲ ଫୁଟେ, ଫୁଲରେ ରଂଗଧରେ, ମହୁଭରେ । ମାତ୍ର ସେ ଫୁଲଟି ମୁଁ ହୋଇପାରେ, ମତେ ସେଭଳି ଫୁଲ ଫୁଟାଇଦେବାର ମାଳି-ହାତଟିଏ ଥାଇପାରେ, ଜାଣିନଥିଲି । ଜାଣିଥିଲି ଜୀବନ-ବୀଣାରେ ସୃଷ୍ଟିର ସଂଗୀତ ନିନାଦିତ ହୁଏ । ମାତ୍ର ସ୍ୱରଟିର ଧୀର ଝଂକାରଟିଏ ମଧ ଶୁଣିନଥିଲି । ନିଜେ ସୁର ହୋଇ ବାଜିପାରିବି, ସେ ଅଂଗୁଳିଚାଳନାର କୋମଳତାକୁ କେବେ କଳ୍ପନା କରିନଥିଲି ।

ସ୍ତବ୍ଧ ବନାନୀରେ ହଠାତ୍ କୋଳାହଳ । ମୋ ଭିତରେ ଝରଣାଟିଏ ଯେପରି ଫିଟିପଡ଼ିଲା । ସ୍ୱପ୍ନମାନେ ଫୁଲହୋଇ ବନସାରା ବିଛାଇଗଲେ । ପକ୍ଷୀମାନେ କଳକାକଳିରେ ଆକାଶ ବତାସ ବିଧୂନିତ କରିଦେଲେ । ସୌନ୍ଦର୍ଯ୍ୟ ଅପୂର୍ବ ରୂପଛଟାରେ ଆଖିଆଗେ ଠିଆ ହୋଇଗଲା । ମୁଁ କି କଥା କହିପାରେ, କି ଗୀତ ଗାଇପାରେ, କି ସ୍ୱପ୍ନ ଦେଖିପାରେ, ସବୁ ସଂଭାବନା ଯେମିତି ସାମ୍ନାରେ ହଠାତ୍ ଆକର୍ଷଣର ଇସାରା ହୋଇ ନାଚିଉଠିଲା ।

ସେ ରୂପ ମୋର ଅଚିହ୍ନା ? ଚିହ୍ନା ରୂପରେ ଯେ ତା'ର ଆବିର୍ଭାବ । ମୁଁ ନିଜକୁ ବିଶ୍ୱାସ କରିବି ନା ସେ ରୂପକୁ ? ନିଜକୁ ପ୍ରଶ୍ନ କରିବାର ଅବକାଶଇ ମୋର ନଥିଲା । ମୋର ନିଜ ସ୍ୱରଟି ଶୁଣିବାକୁ, ନିଜ କଥାଟି କହିବାକୁ, ନିଜ ନିଆଁର ଉଷ୍ମମରେ ଭିଜିବାକୁ ଜାଗରିତ ଉଦଗ୍ର ବ୍ୟାକୁଳତାଟି ମୋ ଆଖିଆଗରେ ମୋ ମନୋମତ 'ଛବିଟିକୁ' ଝଲସାଇଦେଲା । ସେ ରୂପ କାହାର ମୁଁ ଦ୍ୱିଧାଗ୍ରସ୍ତ ନଥିଲି । ଦ୍ୱିଧାକୁ ଅବକାଶ ଦେଇନଥିଲି । ସେତେବେଳେ କେବଳ ମନେହୋଇଥିଲା ସମ୍ମୁଖରେ ମୋର୍ ସ୍ୱୟଂ ପ୍ରେମ, ସେ ଯେଉଁ ରୂପ ଧରନ୍ତୁନା କାହିଁକି ନିଜ ରୂପରେ ହିଁ ଆସିବେ ।

ପ୍ରେମର ପଥ ତ ସରଳ ପଥ ନା। ବକ୍ରତା, ଛଦ୍ମତା ଯେ ଛଳନାର ସାଜ ପିନ୍ଧି ପ୍ରେମର ଭ୍ରମ ସୃଷ୍ଟି କରିପାରନ୍ତି, ଭୁଲିଗଲି। ମୁହୂର୍ତ୍ତକ ପାଇଁ ବିସ୍ମୃତ ହୋଇଗଲି ଯେ ଛଳ ଛଦ୍ମର ଗୋପନ ଗଳିରେ ଆଉ ଯିଏ ଆସୁନା କାହିଁକି ସେ ପ୍ରେମର ରାଜପୁତ୍ର ନୁହେଁ।

ଛଳନା, ଛଦ୍ମତା, କପଟତା ପୃଥିବୀର ବୁଦ୍ଧିମତ୍ତା, ଚାଲାକି, ନା ଦୁର୍ବଳତା, ଅସହାୟତାର ଖଂଜ-କୌଶଳ ?

ଜାଣିଚାଏ ନିଆଁଝୁଲ ହୋଇ ସେ କାହାର ଆବିର୍ଭାବ ? ଉଷ୍ମ ହେବାକୁ ମୁଠାଇଦେଇ ହାତ ପୋଡ଼ିଗଲା ପରେ ହିଁ ଜାଣିଲି ସେ ନିଆଁକୁ ଧାରଣ କରିବା ଭଳି ପୋଡ଼ାମାଟି ମୁଁ ହୋଇପାରିଲିନାହିଁ। ସେ ତାତିକୁ ସହିବା ଭଳି ପଥର ଛାତି ପୃଥିବୀର ନାହିଁ।

ସଂଗୀତଟିଏ ଶୁଣିବି ବୋଲି ବସିଥିଲି ନା, ବିକୃତ କର୍କଶ ଯଂତ୍ରଣାର ଆର୍ତନାଦଟିଏ ମୋ ବୁକୁ ବିଦୀର୍ଣ୍ଣ କରି ଉଚ୍ଚାରିତ ହୋଇଗଲା। ଫୁଲଟିଏ ବୋଲି ଯାହାକୁ ଛୁଇଁଦେଲି, କଣ୍ଟା ଆଉ କୀଟର ଦଂଶନରେ କରତଳ ରକ୍ତାକ୍ତ ହୋଇଗଲା। ଅଂଗରୁ ଅନ୍ତରାତ୍ମା ଯାଏ ବିଷକ୍ରିୟା ସଂଚରିଗଲା। ସେ ବିଷକୁ କାଟିବାର ମଂତ୍ର ପଢ଼ିନଥିଲି। ଆର୍ତନାଦକୁ ସଂଗୀତ କରିବାର ସୁରସାଧନା ଶିଖିନଥିଲି।

ରୂପରେ ଲୁବ୍ଧ, କଥାରେ ମୁଗ୍ଧ, କାମନାର ଅରଣ୍ୟରେ ବିଭ୍ରାନ୍ତ ମୋର ଚିତ୍ତ ଇନ୍ଦ୍ର-ବିବଶ ହେବାରେ ଆଶ୍ଚର୍ଯ୍ୟ କିଛି ନଥିଲା। ରୂପର ବାହାରେ ପ୍ରେମକୁ କେବଳ ଅରୂପ ବୋଲି ଜାଣିଥିଲି, ବିନା-ରୂପରେ ତାକୁ ପ୍ରତ୍ୟକ୍ଷ କିପରି କରିଥାନ୍ତି ? ମାତ୍ର ସେ ରୂପଟିକୁ ପ୍ରେମ ବୋଲି ଧରିନେବାବେଳେ, ସେ ରୂପଛବି, ସେ ସମ୍ମୁଖସ୍ଥ ଦୃଶ୍ୟମାନତାର ଅନ୍ତରାଳରେ ପ୍ରେମର ଆଉ କେଉଁ ଅରୂପ ମହନୀୟତା ରହିଛି, ତା ସେତେବେଳେ କିପରି ବୁଝିଥାନ୍ତି ?

ରୂପ ଏତେ ସୁନ୍ଦର ! କଥା ଏତେ ମଧୁର ! ଆକର୍ଷଣ ଏତେ ଦୁର୍ନିବାର ! ଏକଥା ଜାଣିବାର ପ୍ରଥମ ଚମକ ବେଳେ ହୃଦୟ ନିଜ ସ୍ପନ୍ଦନଟି ଛଡା ଆଉ କ'ଣ ଶୁଣିପାରେ ?

ସୁପ୍ତ ହୃଦୟର ପ୍ରଥମ ଜାଗରଣ ବେଳାରେ ମୋ ନାମଟି ସଂଗୀତ ପାଏ ଅତି କୋମଳ, ମଧୁର ଆବେଗବିହ୍ୱଳ ସ୍ୱରରେ ଯେଉଁ ଅଧରୋଷ୍ଠରୁ ଗୁଂଜରିତ ହେଉଥିଲା, ତାହା ଇନ୍ଦ୍ରଙ୍କର ନା ଗୌତମଙ୍କର – ଭାବିବାର ସମୟ ପାଇନଥିଲି। ମୁଁ କେବଳ ମୋ'ରି ନାମକୁ ଶୁଣୁଥିଲି। ଯେପରି ପ୍ରଥମକରି ଶୁଣୁଥିଲି। ମୋ ଛାତି ଭିତରୁ ହିଁ ଶୁଣୁଥିଲି। ଆଉ ତାକୁ ପ୍ରେମର ମଂତ୍ର ରୂପେ ଶୁଣୁଶୁଣୁ ସମ୍ମୋହିତ ହୋଇଗଲି।

ଯେଉଁ ପ୍ରେମର ସାମାନ୍ୟତମ ସ୍ପର୍ଶ ମୋର ସମଗ୍ର ସ୍ଥିତିକୁ ଟଳମଳ କରିଦେଲା, ସେ ପ୍ରେମ ତା'ର ନିଜ ରୂପରେ କିଭଳି ଶକ୍ତିଶାଳୀ ହୋଇଥିବ ?

ଆକାଶର ବିଜୁଳିକୁ ଦୂରରୁ ଦେଖି ଚମକିବା, ଆଉ ସେ ବିଜୁଳି ଯଦି ଆକାଶରୁ ଖସି ବଜ୍ରପାତ ହୋଇ ଭୂମି ସ୍ପର୍ଶକରେ ?

ଆକାଶର ସେ ପ୍ରେମକୁ ମୁଁ ଭୂମି ଉପରେ ବଜ୍ରାଘାତ ପ୍ରାୟ ଭେଟିଥିଲି ବୋଲି ତ ମୁହ୍ୟମାନ ହୋଇଗଲି।

ସେ ଦୁର୍ମଦ ପ୍ରାଣାବେଗକୁ ମୁଁ କିଛି ବି ପ୍ରଶ୍ନ କରିନଥିଲି। ବହିଯିବା ତ ତା'ର ପ୍ରକୃତି। ମୋ ପାଖେ କୂଳର ସଙ୍ଗାଟିଏ ଯେ ନିରୂପିତ ହୋଇଥିଲା, ଶଯ୍ୟାଧାରଟିଏ ପ୍ରସ୍ତୁତ ହୋଇଯାଇଥିଲା, ତାହା ଏତେ କ୍ଷୁଦ୍ର, ଏତେ ସଂକୀର୍ଣ୍ଣ ଥିଲା ଯେ ମୋ ଅନ୍ତରର ଉଚ୍ଛଳ ରସବହର ତାକୁ ଅନାୟାସରେ ଉଲ୍ଲଂଘନ କରିବାର ଉଦ୍‌କୂଳ ଉଲ୍ଲାସରେ ମାଡ଼ିଚାଲିଲା।

ମୁଁ କ'ଣ ତୀର-ସୀମାକୁ ବିସ୍ମୃତ ହୋଇଯାଇଥିଲି? ନା ସଚେତନ ଭାବେ ତାକୁ ଲଂଘନ କରିଥିଲି? ମାତ୍ର ଆକାଶ ଯଦି ଗୋଟାସୁଦ୍ଧା ବର୍ଷାଭାରରେ ଅଜାଡ଼ିହୋଇପଡ଼େ ଏ ପୃଥିବୀ ପ୍ରଳୟ ପ୍ଲାବନରେ ଭାସିଯିବ ହିଁ ଯିବ। ସେ ପ୍ରଳୟକୁ ରୋଧିବାର ତଟ କ'ଣ ଏ ପର୍ଯ୍ୟନ୍ତ ସୃଷ୍ଟି ହୋଇଛି!

କାହିଁକି ଆଗେ ବହିଆସେ ଧାରା, ପଛେ ତିଆରି ହୁଏ କୂଳ? ଆଗେ ଆସେ ଆବେଗ, ପରେ ବିଚାର। ଆଗେ ସ୍ଫୁରିତ ହୁଏ ବିଦ୍ୟୁତ, ପରେ ବଜ୍ର-ଆଧାର।

ବିନ୍ଦୁ ବିନ୍ଦୁ ସଂଚିତ ଜଳକଣାର ସମ୍ମିଳିତ ପ୍ରବାହ ପର୍ବତ ଖୋଳି ଖୋଳି କେତେ କଷ୍ଟରେ ଶଯ୍ୟାଟିଏ ଯେ ପ୍ରସ୍ତୁତ କରେ, ସେ ଶଯ୍ୟା କେତେ ଜଳ ଧାରଣ କରିବ? ବାକୀ ସବୁ ବହି ତ ଯିବ!

ସମୁଦ୍ରକୁ ଧରିରଖିବା ପାଇଁ ଦିଗ୍‌ବଳୟର ସୀମାରେଖା ଲୋଡ଼ା। ପୃଥିବୀର ବିପୁଳ ପ୍ରାଣ-ଆବେଗକୁ ସଂଭାଳିନେବା ପାଇଁ ଏକ ଆକାଶ-ଉଦାର ଛାତି ଲୋଡ଼ା; ସେ ଆକାଶରେ ନିର୍ବାଧତା, ଉନ୍ମୁକ୍ତି, ବିଶାଳତାର ମୁକ୍ତ ଅଂଗନ ଥିବ। ତା'ର ଦିନରାତି, ଭଲମନ୍ଦ, ଆଲୁଅ-ଅଂଧାରର ଦ୍ୱିଧାଗ୍ରସ୍ତତା ନଥିବ। ସେ ଆକାଶ ଦିନରାତିରେ ବିଭାଜ୍ୟ ନଥିବ।

ମୋର ସବୁ ଧାରାପ୍ରବାହ ଯେ ତଟ ଲଂଘି ଉଦ୍‌କୂଳ ହୋଇଗଲେ, ସେମାନେ ହଠାତ୍ ଯେମିତି ନିଃଶେଷ ହୋଇଗଲେ, କେଉଁ 'ହାଁ'ରେ ଯେମିତି ଶୋଷିହୋଇଗଲେ। ବର୍ଷିବା ଭଳି, ଛୁଟିବା ଭଳି ସେ ମିଳାଇଯିବା ମଧ୍ୟ ହଠାତ୍ ହଠାତ୍ ଘଟିଗଲା।

ଉପରେ ଆକାଶରେ ରୋଷଦୀପ୍ତ ସୂର୍ଯ୍ୟଚକ୍ଷୁ ଜଳିଉଠିଲା। ଭୂମିକଂପ, ଆଗ୍ନେୟ ଉଦ୍‌ଗାର, ଖରତାପ, ସବୁ ଏକାବେଳକେ ଉତ୍ତପ୍ତ ବାଷ୍ପଝଡ଼ ହୋଇ ମୋ ଆକାଶବତାସକୁ ଶୁଖାଇଦେଲେ। ଜଳକଣା ତ ଜଳକଣା, ମୋ ଭିତରର ସବୁ ଆର୍ଦ୍ରତାର ସଂଭାବନା ମଧ୍ୟ ନିଶ୍ଚିହ୍ନ ହୋଇଗଲା।

ତା'ପରେ, ମୁଁ ଏଇପରି ପୋଡ଼ାଭୂଇଁ, ମରୁପ୍ରାଂତର ହୋଇ ପଡ଼ିରହିଛି। ଜାଣେ, ଏଠି ଆଉ ଦୂବ ବି କଅଁଳିବ ନାହିଁ। ଏ ତପ୍ତ ଆକାଶକୁ ଆଉ କୋଉ ସଜଳ ମେଘ ଦୂରସମୁଦ୍ରର ଶୀତଳ ଆଶ୍ୱାସନା ଆଣି ପହଞ୍ଚିବନାହିଁ। ଆକାଶର ଶୁଖିଲା ନିଃଶ୍ୱାସ, ଶୋଷିଲା ହାଁ ମାଳମାଳ ମେଘର ଆର୍ଦ୍ରତାକୁ ଶୋଷି ନେଇଯିବ। ଏ ମରୁଭୂମିର ଆକାଶରେ ଉଡ଼ିଗଲା ଚଢ଼େଇର ଡେଣାହଲା ଛାଇଟିକକର ଶୀତଳତା ମଧ୍ୟ ମିଳିବନାହିଁ।

ଶୁଖିଲା ନଈର ଧାର ! ବଂଧମାନ ବାନ୍ଧିଦେବା ପରେ, ସ୍ରୋତଧାର ରୋଧ କରିଦେବା ପରେ, ସୂର୍ଯାତପରେ, ଝଂଜାବାତରେ, ବାଲିର ତାତିରେ ଟିକେ ଟିକେ କରି ତା'ର ଆର୍ଦ୍ରତାକୁ ଶୋଷିନେବା ପରେ ନଈ ଏବେ ଶୁଖିଲା ବାଲିଶେଯ ହୋଇ ପଡ଼ିଛି। ଉପରେ ଖୋଲା ଆକାଶର ଚନ୍ଦ୍ରସୂର୍ଯ, ଗୋଟା ଗୋଟା ଆକାଶର ବର୍ଷାଧାରା ମଧ୍ୟ ତାକୁ ଆଉ ଧାରାବତୀ କରିପାରେନାହିଁ। ଗୋଟିଏ ଋତୁର ସମୁଦାୟ ବର୍ଷା ତା'ର ଚୋପାଏ ଶୋଷକୁ ବି ନିଅଣ୍ଟ ହୋଇଯାଏ।

ନଈର ଭାଗ୍ୟ ନଈ ନୁହେଁ, ଆକାଶ ! ଆକାଶ ଉଦ୍ଦାମ ବର୍ଷାବେଗରେ କେବେ ତାକୁ ପ୍ରମତ୍ତା ପ୍ଲାବିତା ଉଦ୍‌ବେଳିତା କରିବ ବା ପ୍ରଚଣ୍ଡ ନିର୍ଦ୍ଦୟ ରୁଦ୍ର ତେଜରେ ସଂତପ୍ତ ମରୁଭୂମି କରିଦେବ, ନଦୀ କାହାକୁ ମନା କରିବ ? କାହାପାଇଁ ଛାତି ନିରୁଦ୍ଧ କରିବ ? ବର୍ଷାର ଓଦା ଛାତି କି ଖରାର ତାତିଲା ହାତ କାହାକୁ ଆଡ଼େଇ ଦେଇ ପାରିବ ? ନଈର ଭାଗ୍ୟ ଆକାଶ !

## (୪)

ଏ ପୃଥିବୀରେ ନାରୀର ଭାଗ୍ୟ ନାରୀ ନୁହେଁ, ପୁରୁଷ !

ପୃଥିବୀରେ ବିଚାରର ନ୍ୟାୟଦଣ୍ଡଟି କେଉଁ ଅଲିଖିତ ନିୟମରେ ପୁରୁଷର ହାତକୁ ଚାଲିଯାଇଛି ଯେ ତା'ର ସବୁ ଅବିଚାରର ଶାସ୍ତି ନାରୀକୁ ନିର୍ବିଚାରରେ ମାନିନେବାକୁ ହେବ। ଏଠି କିଏ କାହାକୁ ବିଚାର କରିବ ? ବିଚାରର ପ୍ରକୃତ ଜ୍ଞାନ, ଯୋଗ୍ୟତା ଭଲା କିଏ ଅର୍ଜିଛି ? ମଣିଷ ପାଖେ ଏଭଳି ବିଚାର ଅଛି ଯାହା ସତ୍ୟର ଶୁଦ୍ଧ ଭୂମିରେ ପହଞ୍ଚିପାରିବ ? ଏଭଳି ନ୍ୟାୟ ଅଛି ଯାହା ନିରପେକ୍ଷ ଭାବେ ଅସ୍ତିତ୍ୱର ଧର୍ମକୁ ସମ୍ମାନ କରିବ ? ଏଭଳି ତର୍କ ପ୍ରମାଣ ଅଛି ଯାହା ହୃଦୟର ଅନୁଭବକୁ ପରୀକ୍ଷା କରିବ ?

ପୃଥିବୀରେ ଏଭଳି ବୁଝାମଣା ଅଛି ଯାହା ପ୍ରେମକୁ ସହଜ ସରଳ ପ୍ରଶ୍ନହୀନ ବାଟଟିଏ ଛାଡ଼ିଦେବ ?

ପ୍ରେମକୁ ଦେବାଭଳି ବା ନେବାଭଳି ସାମର୍ଥ୍ୟ ପୃଥିବୀର ସତରେ କ'ଣ ଅଛି ?

ଛାତି ଭିତରେ ମଣିଟିଏ ସାଇତି ରଖିଛି ବୋଲି ପୃଥିବୀକୁ ଜଣାଇଦେଲି କାହିଁକି ? ମୁଁ କ'ଣ ଜାଣିନଥିଲି ସେ ମଣିକୁ ହାତ କରିନେବାପାଇଁ ପୃଥିବୀ ସାଙ୍ଗେ ସାଙ୍ଗେ ହାତ ପ୍ରସାରିଦେବ। ଆଖି ତା'ର ଲୋଭାତୁର ହୋଇଉଠିବ। ଏ ପୃଥିବୀ ସତରେ କେବେ ମଣିର ଆଲୋକ ଖୋଜେନାହିଁ, ମଣିଟିର ମାଲିକ ହେବାକୁ କେବଳ ଚାହେଁ। ସେ ମାଲିକାନାର ବିଚାର ଭିତରେ ମଣିଟି ଯେ ତା'ର ମଣିତ୍ୱ ହରାଏ, ଦ୍ରବ୍ୟମାତ୍ର ହୋଇ ହସ୍ତଗତ ହୁଏ, ତା'ର ଐଶ୍ୱର୍ଯର ପରିମାପ କାହାରି ଉପଭୋଗର ହାତମୁଠାରେ ହିଁ ଧାର୍ଯ ହୁଏ।

ପ୍ରେମର ସେ ମଣିମୟ ଐଶ୍ୱର୍ଯ-ରୂପକୁ ନା ଇନ୍ଦ୍ର ନା ଗୌତମ କେହି ବି ଚିହ୍ନିପାରିଲେନାହିଁ। ସେଭଳି ଆର୍ଦ୍ରତା, ସୁକୁମାରତା, ସହିଷ୍ଣୁତା ଓ କୋମଳତା କଠୋର ବିଚାରର କ୍ଷୁରହସ୍ତ ନ୍ୟାୟବାଗୀଶ ଗୌତମଂକ ପାଖେ ନଥିଲା, ସେ କେବଳ ଆପଣାର ଶାସ୍ତ୍ରୀୟ ଅଧିକାରକୁ ଚିହ୍ନିଥିଲେ। ସଂବଂଧର ଦାବୀକୁ ବୁଝିଥିଲେ। ସେ ଅଧିକାରର ସୁଯୋଗରେ ପ୍ରଭୁତ୍ୱର ଦାବୀକୁ ପ୍ରୀତିର ପରିଚର୍ଯା ବୋଲି ଭାବୁଥିଲେ। ସଂବଂଧର ଅନ୍ତର୍ଗତ ଟାଣପଣକୁ ଜାଣିନଥିଲେ ବୋଲି ତ ମୁହୂର୍ତ୍ତକର ବିଚାରବିଭ୍ରାଟରେ ସବୁ ସଂବଂଧକୁ ଅନାୟାସରେ ଅସଂବଂଧ କରିଦେଲେ। ଅହଲ୍ୟା ଗୌତମଂକର ସମ୍ପତ୍ତିମାତ୍ର ଥିଲା, ପ୍ରୀତିପାତ୍ର ନୁହେଁ। ପରିଣୀତାକୁ ପ୍ରଣୟିନୀର ସୌଭାଗ୍ୟ ଦେବାଭଳି ମହିମାବଂତ ସମର୍ଥ ପୌରୁଷ ତାଂକର ନଥିଲା।

ଆଉ ଇନ୍ଦ୍ର— ଯାହାର ରତିସୁଖଲାଳସୀ ଆସ୍ପୃହା ପାଖରେ ଅହଲ୍ୟା କେବଳ ରମଣ-ଭୋଗ୍ୟା ନାରୀଟିଏ, ରମଣ-ଯୋଗ୍ୟା ନାରୀ-ଦେହଟିଏ।

ଗୋଟିଏ ମୁହୂର୍ତ୍ତରେ ହିଁ ମୋର ସୁକୁମାର ନାରୀତ୍ୱର କୋମଳ ଫୁଲବନ ଏକ ଦଳିତ ଗଳିତ ଶ୍ମଶାନ ପାଲଟିଗଲା। ଇନ୍ଦ୍ରଂକର ଉଦଗ୍ର ବାସନାଗ୍ନି ଓ ଗୌତମଙ୍କର କ୍ଷୁଭିତ ରୋଷାଗ୍ନିର ଉତ୍ତପ୍ତ ଶିଖା ଦୁଇ ଏକତ୍ର ହୋଇ ମୋର ନାରୀତ୍ୱର ସକଳ ବୈଭବକୁ ପୋଡ଼ି ପାଉଁଶ କରିଦେଲେ।

ଏତେ ସୁନ୍ଦର ରୂପ ତଳେ ଏତେ କୁତ୍ସିତତା ? ଐଶ୍ୱର୍ଯର ରାଜେଶ୍ୱରଂକ ହୃଦୟରେ ଏତେ ଦୀନତା ଆଉ ଜ୍ଞାନର ପ୍ରଦୀପ୍ତ ମାର୍ତ୍ତଣ୍ଡଙ୍କ ଅନ୍ତରରେ ଜ୍ୱଳନର ଏତେ କଳାଦାଗ ? ଏତେ କ୍ଷୋଭ ଈର୍ଷା ସଂତାପର ଦଗ୍‌ଧ ଭୂମି ?

ଏମାନେ କେହି ସେ ପ୍ରେମର ରାଜପୁତ୍ର ନୁହନ୍ତି।

ଏମାନେ କ'ଣ ସେ ରାଜପୁତ୍ରଙ୍କର ବିଶ୍ୱାସୀ ସହଚର, ଯିଏ ତାଙ୍କ ସରଳତାର ସୁଯୋଗ ନେଇ ତାଙ୍କରି ଛଦ୍ମବେଶରେ ତାଂକ ସିଂହାସନରେ ଅଭିଷିକ୍ତ ହୋଇ ତାଙ୍କରି ଅନ୍ତଃପ୍ରତିମାକୁ ଆତ୍ମସାତ୍ କରନ୍ତି ?

ଆଉ ରାଜରାଣୀଙ୍କୁ ବ୍ୟଭିଚାରିଣୀର ଶାସ୍ତି ଦିଅନ୍ତି ?

ମୋର ବିଚାର ତ କେବଳ ମୋର ପତ୍ନୀତ୍ୱର ନଥିଲା, କେବଳ ମୋର ଅହଲ୍ୟାତ୍ୱର ନଥିଲା, ଥିଲା ଗୋଟିଏ ନାରୀର ବିଚାର। ତା'ର ବିଚାରକ ଥିଲେ ଦୁଇଟି ଆତ୍ମଭ୍ରଷ୍ଟ ପୁରୁଷ।

ଜଣେ ତା'ର କାମୁକତାରେ ପ୍ରେମକୁ ଧର୍ଷଣ କରିଥିଲା ଓ ଅପର ଜଣକ କ୍ରୋଧର କଶାଘାତରେ ପ୍ରେମକୁ ରକ୍ତାକ୍ତ କରିଥିଲା। ଅହଲ୍ୟାର ପ୍ରେମକୁ ନୁହେଁ, ସେମାନଙ୍କର ନିଜ ପ୍ରେମକୁ। ଉଭୟେ ହୃଦୟରୁ ପ୍ରେମକୁ ବିସର୍ଜନ ଦେବାପରେ ହିଁ ଗୋଟିଏ ନାରୀର ଜୀବନକୁ ନେଇ ଖେଳ ଖେଳିବାର ଅଧିକାର ଅର୍ଜନ କରିଥିଲେ। ଜଣକର କାମାର୍ତ୍ତ ପୀଡ଼ନରେ ମୋର ନାରୀତ୍ୱର ବୈଭବ ବିମଥିତ ଓ ଅନ୍ୟଜଣକର ଦର୍ପିତ ପୌରୁଷର ଅହଂକାରରେ ମୋର ନାରୀତ୍ୱର ସୌକୁମାର୍ଯ ବିଦଳିତ ହୋଇଯିବା ପରେ, ନାରୀଟିଏ ନାରୀ ହୋଇ ବଂଚିବ କି ନା ସେ ପ୍ରଶ୍ନ ପୂର୍ବରୁ ନାରୀଟିଏ

ମଣିଷ ହୋଇ, ଜୀବନ୍ତ ମଣିଷ ହୋଇ ବଂଚିବ କି ନା– ତା'ର ନିର୍ଣୟକ ମଧ୍ୟ ହୋଇଥିଲେ ଦୁଇଟି ଦର୍ପାନ୍ଧ ପୁରୁଷ।

ନାରୀର ବିଧାତା ବିଧାତାପୁରୁଷ ନୁହେଁ, ମର୍ତ୍ତ୍ୟର ପୁରୁଷ !

ପୁରୁଷ ଭଳି ସମର୍ଥ, ସବୁ ପାରିବାପଣର ଅହଂକାରୀ ସତ୍ତାଟିଏ ଗଢ଼ିସାରିବା ପରେ ପୁଣି ନାରୀଭଳି ଦୟନୀୟ ଜୀବଟିଏ ଗଢ଼ିବାର ଦୁର୍ବୁଦ୍ଧି ବିଧାତା କରିଥିଲା କାହିଁକି ?

ପ୍ରେମର କ'ଣ ନାରୀଦେହଟିଏ ଏପରି ଏକାନ୍ତ ପ୍ରୟୋଜନ, ଯା'ର ହୃଦୟ ତା'ର ଏକମାତ୍ର ସିଂହାସନ ?

ନାରୀବିନା କିଏ ପ୍ରେମକୁ ଏପରି ଅକୁଣ୍ଠିତ ଧାରଣ କରିବ, ଜନ୍ମ ଦେବ, ପରିଚର୍ଯ୍ୟା କରିବ ଓ ନିଜକୁ ତା ପାଖେ ଲୁଟାଇଦେବ ?

ପ୍ରେମର ଏ ଅଖଣ୍ଡ ସର୍ତ୍ତକୁ ମାନିନେବା ପୁରୁଷର, ସଚେତନ ପୌରୁଷର ଅହଂକାର ପକ୍ଷେ ସଂଭବ ନୁହେଁ ବୋଲି ?

ପୁରୁଷ କେବେ ନିଜକୁ ଭୁଲିପାରିବନାହିଁ। ନିଜ ଲକ୍ଷ୍ୟକୁ ହୁଡ଼ି ପାରିବନାହିଁ। ପ୍ରେମ ପାଖେ ସେ ନିଜକୁ କେବେ ପୂରାପୂରି ସମର୍ପିଦେଇ ପାରିବନାହିଁ। ପ୍ରେମ ତା'ପାଇଁ ଏକ ଉପଲକ୍ଷ୍ୟ, ଯାହାକୁ ସେ ଭୋଗ କରିବ କିଂବା ବିଚାର କରିବ– ସବୁଥିରେ ତା'ର 'ନିଜର' ମୋହର ବସାଇଦେବ।

ମାତ୍ର ପ୍ରେମ ଭଳି ସାର୍ବଭୌମ କ'ଣ କେବେ ଭୋଗ, ବିଚାର ବା ଚିହ୍ନୀକୃତ ହେବାର ଦୁର୍ଭାଗ୍ୟକୁ ମାନିନେଇପାରେ ?

ପୁରୁଷ ଆପଣାର ପ୍ରଭୁ ହୋଇପାରେ, ମାତ୍ର ନାରୀ ପ୍ରେମର କ୍ରୀତଦାସୀ। ଗୌତମଙ୍କ ପ୍ରତି ମୋର ଶ୍ରଦ୍ଧଶ ସଂଭ୍ରମ ଆଜି ବି ଊଣା ହୋଇନାହିଁ। ଇନ୍ଦ୍ରଂକର ଦେବାଧିପତିତ୍ୱ, ବୈଭବ ସାଜ, ବଜ୍ରଶକ୍ତି ପ୍ରତି ମଧ୍ୟ ମୋର ଅନାସ୍ଥା, ଅସମ୍ମାନ ନାହିଁ।

ମାତ୍ର ସେମାନେ ପ୍ରେମର ନିଜ ରୂପ ନୁହନ୍ତି। ମୁଁ ନା ଗୌତମ ନା ଇନ୍ଦ୍ର କାହାରିକୁ, ସେମାନଙ୍କର ନିଜସ୍ୱ ପରିଚୟଟି ପାଇଁ ନୁହେଁ, ପ୍ରେମର ପରିଚୟପତ୍ରରେ ହିଁ ପରିଚର୍ଯ୍ୟା କରିଛି। ପ୍ରେମଠାରୁ ବଡ଼ ସେମାନଙ୍କର ଭିନ୍ନ ଏକ ସ୍ୱ-ପରିଚୟ ଅଛି, ଜାଣିନଥିଲି। ଜ୍ଞାନର ଗରିମା ଭୋଗର ଲାଳସା ନିଜ ହୃଦୟରୁ ପ୍ରେମକୁ ବିତାଡ଼ିତ କରି ଅପର ଜୀବନ ସହ ଖେଳ ଖେଳିବାର ଆମୋଦରେ ପୌରୁଷର ସାର୍ଥକତା ଖୋଜେ, ନାରୀ ହୋଇ ଏକଥା ବୁଝିନପାରିବାର ଭୁଲ୍ କରିଥିଲି।

ପୁରୁଷର ଅବିଚାର ଓ ନାରୀର ଭୁଲ– ପୃଥିବୀରେ ପ୍ରେମର ଆଉ ଭବିଷ୍ୟତ କାହିଁ? ପ୍ରେମ ଯେ ମୁକ୍ତି– ସେ ଉପଲବ୍ଧିକୁ ଗୌତମ କି ଇନ୍ଦ୍ର କେହି ବି ପାଇନାହାଁନ୍ତି। ଅହଲ୍ୟାକୁ ସେମାନେ କେଉଁ ପ୍ରେମମୁକ୍ତିର ସାଧନାର ଦୀକ୍ଷା ଦେଇପାରିଥା'ନ୍ତେ ? ଜଣେ ଶୂନ୍ୟ-ହୃଦୟ ଓ ରକ୍ତଚକ୍ଷୁ, ଅନ୍ୟ ଜଣେ କଳୁଷିତ-ଚିତ୍ତ ଓ ଆରକ୍ତିମ-ଦୃଷ୍ଟି। କାମ ଓ କ୍ରୋଧର ରଜ୍ଜୁରେ ଆପଣାର କ୍ଷୁଦ୍ରତାଠାରେ ବଂଧା ପଡ଼ିଥିବା ଦୁଇ ଦେବ-ମାନବ ପ୍ରେମର କେଉଁ ସାଧନା କରିଛନ୍ତି ଯେ ମୋର ନାରୀତ୍ୱର ଅପରାଧ ବିଚାର କରିବେ ?

ଗୌତମ ମୁକ୍ତିର ବିଧାତା ନୁହନ୍ତି– ମୁକ୍ତିର କଥା କେବଳ କହିପାରନ୍ତି। ଇନ୍ଦ୍ର ମୁକ୍ତିର ଦେବତା ମଧ୍ୟ ନୁହନ୍ତି। ମୁକ୍ତିର ଛଳନା କରି ଚାରିକାଂଥ ବାହାରକୁ କାଢ଼ିଆଣନ୍ତି।

କେଉଁ ସ୍ତରରେ ପ୍ରେମ ମୁକ୍ତିର ବିଧାତା ସାଜେ, ତା'ର ସାଧନା ମତେ, ଗୋଟିଏ ନାରୀକୁ ହିଁ ପ୍ରସ୍ତର-ତପସ୍ୟା ଭିତରେ କରିବାକୁ ହୋଇଛି।

କେବଳ ଅମରାର ସ୍ୱପ୍ନ ନୁହେଁ, କେବଳ ମର୍ତ୍ତ୍ୟର ସମ୍ମୋହନ ନୁହେଁ, ମର୍ତ୍ତ୍ୟ ଓ ଅମରାବତୀକୁ ଘେରି ମାନବାତ୍ମାର ଆଶା-ବିଶ୍ୱାସର ସମୁଦାୟ ଜଗତଟି ଧରାସାତ୍ ହୋଇଯିବାର ସେ ଦାରୁଣ ବିପର୍ଯୟ ବେଳାରେ ଅହଲ୍ୟାର ସୁକୁମାର ନାରୀ-ଆତ୍ମାଟି ମୂକ ନିଶ୍ଚଳ ନିର୍ବେଦ ପାଷାଣ-ପ୍ରତିମାଟିଏ ଛଡ଼ା ଆଉ କ'ଣ ହୋଇପାରିଥାନ୍ତା ?

(୫)

ସମୟ! ତୁ ଯାଦୁକର। ସ୍ୱପ୍ନମାନଙ୍କୁ ଏମିତି କୁଢ଼େଇଦେଉ, ଆଉ ମୁହୂର୍ତ୍ତକେ ଆଡ଼େଇନେଉ। ତୋର ନିଷ୍ଠୁରତାର ପ୍ରକାଶ ତୋର ଆଖି ଓଠ ନୁହନ୍ତି, କରାଂଗୁଳି ମାତ୍ର।

ସମୟ, ତୁ ତ ସ୍ୱପ୍ନ ଆଉ ସ୍ୱପ୍ନଭଂଗ। ଆଶା ଆଉ ହତାଶା। ତୁ ମଧୁର ସ୍ୱର ଆଉ କର୍କଶ ଭର୍ତ୍ସନା। ତୁ ସବୁକିଛିର ସଂଭାବନା ଆଉ କିଛି ନୁହଁର ଭଂଗାଖେଳଣା। ତୁ ତ ସେହି ମୋହିନୀ କନ୍ୟା, ଯିଏ ଅମୃତର ରସବିନ୍ଦୁଟିଏ ଚଖାଇବ ବୋଲି ସାରା ଜଗତକୁ ରାହୁଗ୍ରସ୍ତ କରି ରଖିଛି। ସଭିଁକୁ ଦେବତାର ଛଦ୍ମାବରଣ ପିନ୍ଧାଇଛି। ତୋର ସେ ଭରା ରସପାତ୍ରଟିରୁ ବୁନ୍ଦାଏ ଭଲା କେହି ଚାଖିପାରିଛି ?

ମୁଁ ଜାଣିସାରିଲିଣି ଯେ ତୁ କିଛି ଦେବୁନାହିଁ, ଦେଇ ପାରିବୁ ନାହିଁ। ତୋ ପାଖରେ ଗଦାଏ ପ୍ରତିଶ୍ରୁତି ଛଡ଼ା ଆଉ କିଛି ବି କାହାକୁ ଦେବାକୁ ନାହିଁ। ସବୁ ବିଶ୍ୱାସକୁ ପ୍ରତାରଣାର ମୁହଁଟିଏ ଛଡ଼ା ଆଉ କିଛି ତୋର ଭେଟିଦେବାକୁ ନାହିଁ। ତଥାପି ତତେ ମୁଁ ମୁହଁ ଫେରାଇନାହିଁ। ତୋର ସବୁ ଛଳନା, ବଂଚନା, ଅଭିଶାପ ଓ ଅତ୍ୟାଚାର ସତ୍ତ୍ୱେ ମୋ ହୃଦୟରେ ତଥାପି ବଂଚିରହିଥିବା ବିଶ୍ୱାସର ନିଃଶ୍ୱାସଗୁଡ଼ିକୁ ତୋ ହାତରେ ଧରାଇଦେଇ ତୋ ଆଂଗୁଳି ଅଗରେ ଓହ୍ଲାଇ ଆସୁଥିବା ଯୁଗାଂତରମାଂନକୁ ମୋ ପାଇଁ ଶାଶ୍ୱତର ସମାଧାନ ପଚାରିଚାଲିଛି।

ଏ ଅପେକ୍ଷାର ଶେଷ ରୂପ ଜାଣେନା। ବାରବାର କିନ୍ତୁ ମନେହୋଇଛି ମରୁଭୂମିକୁ ବି ଓଦା କରିପାରେ, ଏଭଳି ଭଲପାଇବା ଅଛି। ତାହା ଆକାଶର ବର୍ଷା। ଖରାତାତିର ତହକରେ ସିଝିଯାଇଥିବା ହୃଦୟ ପାଇଁ ସଜଳବର୍ଷାଟିର ଅନିବାର୍ଯତା ଏକମାତ୍ର ସତ୍ୟ।

ଫୁଲ ବୋଲି ଯାହାକୁ ମୁଠାଇଛି ସବୁ ପାଉଁଶ। ନିର୍ଘାତ ଖରାରେ ସବୁ ଶୁଖି ଜାଳ। ସେ ତାତି ଆକାଶର କି ମୋ ହାତମୁଠାର ଯାହା ବି ହେଉ, ଆଉ କିଂତୁ ପଙ୍କୁଆ ପାଣିର ଚବଚ଼ବରେ ଏ ଛଟପଟ ଶୋଷ ମରିବନାହିଁ।

ବୀଣାର ତାରମାନଙ୍କୁ କେହି ଶିଥିଳ କରିଦେଲେ, କେହି ଟାଣି ଛିଡ଼ାଇଦେଲେ। ସେ ତାରରେ ସୁର ସାଧିବା ଏବେ କେବଳ ତୁମରି ଶିଳ୍ପୀ ହାତର ସାମର୍ଥ୍ୟ।

ଏ ବେଳେ ଜଣାଇଦିଅ ଯେ ତୁମେ ପାଖେ ପାଖେ ଅଛ। ଅଭିଶାପର ବଜ୍ରସ୍ୱରରେ, କ୍ରୋଧାଗ୍ନିର ରୁଦ୍ରତାପରେ, ବିପର୍ଯ୍ୟସ୍ତ ଭାଗ୍ୟ ତଳେ ଚାପି ହୋଇଯାଇଥିବା ବିମୂଢ଼ ବେଦନା, ଅସହାୟ କାତରତାକୁ ଜଣାଇଦିଅ ଯେ ତୁମେ ତଥାପି ଧରିରଖିଚ ତା ଜୀବନର ପଥରବୋଝକୁ– ମାଟି ହୋଇ, ପୃଥିବୀ ହୋଇ, ସମୟ ହୋଇ।

ରୌଦ୍ରତାପରେ ପଦ୍ମମାନେ ଝାଉଁଳିପଡୁଥିବା ବେଳେ, ଫୁଲମାନେ ମଉଳିପଡୁଥିବା ବେଳେ ଚୁପ୍‌ଚାପ ଦେଖୁଥିବା ଗଛର ମୂକ ବେଦନାକୁ ତଥାପି ବର୍ଷା ଆକାଶର ଆଶ୍ୱାସନା ସଜୀବତାର ଛୁଆଁ ହୋଇ ଓହ୍ଲାଇ ଆସୁଥିବା ଭଳି, ମରୁବାଲି ତଳେ ଶୀତଳ ଝର ତଥାପି ସଂଚରିଯାଉଥିବା ଭଳି।

ଜଣାଇଦିଅ ଏ ଅଂଧାର ବି ତୁମର ଆଉ ଏକ ରଂଗ। ଏ ଚୁପ୍‌ଚାପ ନିଃଶୂନତା ତୁମର ଆଉ ଏକ ସ୍ୱର।

ତୁମେ କୁଆଡ଼େ ଭରା ବର୍ଷାର ଆକାଶ! ମୋ ଆଖିରେ ନିଆଁ ଢାଳୁଥିବା ନୀଳ ବହ୍ନିଶିଖାମୟ ତପ୍ତ ଆକାଶ ଦେହରୁ ତୁମର ସେ ବର୍ଷନ୍ତ ନୀଳଘନତାକୁ ମୁଁ କେଉଁଠି ଖୋଜିବି? ତୁମେ କୁଆଡ଼େ ମୋହନ ସୁନ୍ଦର! ସହସ୍ରାୟିତ କଦାକାର ବାସ୍ତବର ବୀଭତ୍ସତାରେ ଭେଟଣା ଏ ମୋର ଆଖି ତୁମର ଚାରୁସ୍ନିଗ୍ଧ ଅଭିରାମ ମାଧୁରୀକୁ କିପରି କଳ୍ପନା କରିବ? ତୁମେ କୁଆଡ଼େ ସରସ ପ୍ରବାହ! ଦିଗନ୍ତହୀନ ଏ ଶୁଖିଲା ବାଲିଛାତିରୁ ଶୀତଳ ନୀଳଝରର ସଂଧାନ କିପରି କରିବି? ଦୁର୍ବିପାକର ରୁଦ୍ର କଠୋର ପୀଡ଼ନରେ କଣ୍ଟାଗ୍ରସ୍ତ ମୋର ପ୍ରାଣ, ତୁମ କୋମଳତାର ସ୍ପର୍ଶକୁ କିପରି ବୁଝିବି?

ତୁମେ କୁଆଡ଼େ ସ୍ୱୟଂ ସୌଭାଗ୍ୟ! ଦୁର୍ଭାଗ୍ୟର ଶେଷ ପାହାଚ୍‌ରେ ମୂର୍ଚ୍ଛାହତ ମୁଁ ନିଜକୁ ତୁମ ପାଦ ରଖିବାର ସ୍ଥାନଟିଏ ବୋଲି କିପରି ଜାଣିବି?

ତୁମେ କ'ଣ ସେଇ ପ୍ରତିଶ୍ରୁତ ଭବିଷ୍ୟତ, ବହୁ ଅତୀତରେ ଯିଏ ମତେ ଦିନେ ଅହଲ୍ୟାର ଭାଗ୍ୟକୁ ପିନ୍ଧାଇ ପୃଥିବୀକୁ ପଠାଇଦେଇଥିଲା?

ମୋ ଅପ୍ରାଧ କ୍ଷମାକର। ସେଦିନର ତୁମର ସେ ସଂକଳ୍ପ ଓ ତାକୁ ରୂପମୟ କରିବାରେ ମୋର ପ୍ରତିଶ୍ରୁତ ସାଧନା ସଫଳ କି ବିଫଳ, ତା'ର ନିର୍ଣ୍ଣାୟକ କେବଳ ତୁମେ। ମୋ ପାଇଁ ତ ଏ ମାଟି ପୃଥିବୀର ଅହଲ୍ୟା ଜୀବନ ନିଷ୍ଫଳ, ସେ ପୃଥିବୀକୁ ଅପାର୍ଥିବ ପ୍ରେମପାଖେ ଠିଆ କରିପାରିଲାନାହିଁ।

ମାତ୍ର ଅହଲ୍ୟାର ପାଷାଣ ଛାତିରେ ତଥାପି କେଉଁ ବଂଚିଉଠିବାର ଆଶାଭିଳାଷଟି ସଂଜୀବିତ ରହିଥିଲା? କେଉଁ ଶକ୍ତି ଟିକକ ସବୁ ଅଂଧାରର ବୋଝକୁ ମୁଣ୍ଡାଇ ଏକ ସୂର୍ଯ୍ୟସକାଳ ଦିନ ଗଣୁଥିଲା?

ନରକରେ ଯେ ପହଞ୍ଚିଛି, ସେଇତ ମୋର ସ୍ୱର୍ଗରେ ପହଞ୍ଚିବାର ପ୍ରତିଶ୍ରୁତି। ଅଂଧାରରେ ବୁଡ଼ିଛି ବୋଲି ତ ପୂର୍ବାଶାର ଆଲୋକ ସଂପର୍କରେ ଏତେ ନିଶ୍ଚିଂତ ପ୍ରତ୍ୟୟ।

ପଥରଠାରେ ଅପେକ୍ଷା ସରିଯାଇନଥାଏ। ପଥରଠାରେ ତ ଅପେକ୍ଷାର ଆରମ୍ଭ ହୁଏ। ପଥର ଭଳି ପ୍ରତୀକ୍ଷା-ନିଷ୍ପନ୍ଦ ଆଉ କିଏ ରହିପାରେ ?

(୬)

ସୂର୍ଯ୍ୟ ଆଉ ଫୁଲ ଦୁହେଁ ହଠାତ୍ ମତେ ଏକାଠି ଚାହିଁଦେଲେ। ମୁଁ ଫୁଲ ନା ଆଲୋକ ହୋଇଗଲି ? ମହକରେ ଭରିଗଲି। ତରଳ ସୁନାରଂଗରେ ଗୋଳି ହୋଇଗଲି। ମୁଁ ସୂର୍ଯ୍ୟକୁ ଦେଖୁଥିଲି ନା ସୂର୍ଯ୍ୟ ମତେ ଦେଖୁଥିଲା ? ମୁଁ ଆକାଶକୁ ଦେଖୁଥିଲି ନା ଆକାଶ ମତେ ଦେଖୁଥିଲା ? କାକରର ଅସଂଖ୍ୟ ଆଶ୍ଚର୍ଯ୍ୟଭରା ଦୃଷ୍ଟିରେ ସାରା ବିଶ୍ୱ ମତେ ଆଉ ମୋ ସମ୍ମୁଖସ୍ଥ ଅଭିରାମ ଦୃଶ୍ୟପଟଟିକୁ ଦେଖିବାରେ ଲାଗିଥିଲା।

ଏ ସୂର୍ଯ୍ୟସକାଳ ! ମୁଁ କ'ଣ ଶିରିଶିରି ପବନରେ ହଲୁଥିବା ପତ୍ରଧାର ? ମୁଁ କ'ଣ ଫୁଲପାଖୁଡ଼ାର ରଂଗବହର ? ମୁଁ କ'ଣ ଘାସର କାକରରେ ଆକାଶର ଖବର ? ପୃଥିବୀର କାନରେ କେଉଁ ଅଦେଖା ପ୍ରେମର ମୃଦୁ ମଧୁରାଳାପ ? ମୁଁ ସୁନାରଂଗର ସମ୍ମୋହିତ ଉଲ୍ଲାସ ?

ଗଂଗାକୁ ସମର୍ପିଦେଇଥିବା ସେଦିନର ଭବିଷ୍ୟତ ଆଜି କାହା ସ୍ପର୍ଶରେ ତରଂଗିତ ହୋଇଗଲା ? ଆକାଶକୁ ଟେକିଦେଇଥିବା ସେଦିନର ଭବିଷ୍ୟତ ଆଜି କାହା ପାଦସ୍ପର୍ଶରେ ଗୁଂଜରିତ ହୋଇଗଲା ?

ଏ ରୁକ୍ଷ ଧୂସର ପରିତ୍ୟକ୍ତ ଆଶ୍ରମ, କେଉଁ ଆବେଗର ନବୀନ ପୁଷ୍ପ କିଶଳୟରେ ମଂଜରିତ ହୋଇଗଲା ?

ଅନେକ ପାଦର ଛୁଆଁତ ବାଜିଛି। କାହାର ଗୋଡ଼ଘସା, କାହାର ଗୋଇଠାମାଡ଼। କେଉଁ ପାଦଟି କେବେ ଏଭଳି କୋମଳ କାରୁଣିକ, ଧୀର ସଂତର୍ପଣ, ସଂଜୀବ ସ୍ପର୍ଶରେ ଶିହରିତ କରିନଥିଲା।

ଅନେକ ପାଦପ୍ରହାର ଭୋଗିଛି। କେତେ ରୁକ୍ଷତା ନିର୍ମମତା, କେତେ ତୁଚ୍ଛ ତାଚ୍ଛଲ୍ୟ। ମାତ୍ର ଆଜିର ଏ କୋମଳ ପାଦଛୁଆଁ, ବିଗଳିତ କରୁଣା ଧାରାର ସ୍ପର୍ଶରେ ମୋର ପଥରତ୍ୱ ତରଳି ଅଶ୍ରୁ-ଗଂଗା ପାଲଟିଯାଉଛି।

ଏଇ ପାଦ ! ଏଇ ପାଦଭାର ଜୀବନକୁ ପଥର କରିଦିଏ। ଆଉ ସେ ପାଦଛୁଆଁ ପୁଣି ପଥରକୁ ଜୀବନ୍ତ କରି ତୋଳେ। ସେଇ ପାଦଚାପରେ ଆକାଶକୁ ସ୍ପର୍ଦ୍ଧା କରିଥିବା ମଥାଟି ପାତାଳକୁ ଚାପିହୋଇଯାଏ। ପୁଣି ସେଇ ପାଦରୁ ଝରୁଥିବା ସୁରଧୁନିର ଧାରାଟି ପାତାଳର ଅଗ୍ନିକୁଣ୍ଡରେ ଦହିହେଉଥିବା ପ୍ରାଣର ସଂତପ୍ତତାକୁ ଶୀତଳ ସୁଅରେ ଧୋଇନେଇଯାଏ।

ଲୁହଭରା ଆର୍ତିଟିଏ ହୋଇ ସେ ପାଦ ଉପରେ ଅଜାଡ଼ିହୋଇ ନପଡ଼ିଲେ ଜୀବନର ପାଷାଣଭାର ଦୂର ହୁଏନାହିଁ।

ସବୁ ପାଦ ମତେ ଗୋଟାଏ ଗୋଡ଼ରଖା ପଥର ବୋଲି ଜାଣିଥିଲେ। ପଥରର ପଥରତ୍ୱ, ନିର୍ଜୀବତ୍ୱ ସେମାନଙ୍କ ପାଇଁ ଏକମାତ୍ର ସତ୍ୟ ଥିଲା।

ତୁମେ କିନ୍ତୁ ମୋର ପାଷାଣ ବେଦନାର ଭାରତଳୁ ଫୁଲ-କୋମଳ ପ୍ରାଣଟିଏ ଶତଦଳ କରି ଫୁଟାଇଦେଲ।

ତୁମର ଏ ଆସିବାଟା କେତେ ଆଡ଼ମ୍ବର, ଆୟୋଜନହୀନ, ଅଥଚ କେତେ ସମାରୋହମୟ! ବିଚାର, ଭର୍ତ୍ସନା, ଭ୍ରୂକୁଞ୍ଚନର ବାହାରେ ଏକ ସ୍ୱତଃ ସ୍ନେହାଂଚିତ ସ୍ପର୍ଶର ଉଦାର ଆଶ୍ୱାସନାମୟ!

ତୁମେ କିଏ, ତୁମେ ସାଧାରଣ ମଣିଷ କି ଅବତାର-ପୁରୁଷ ଜାଣିବା ମୋର ଲୋଡ଼ାନାହିଁ। ମଣିଷ ଦେବତାକୁ ଚିହ୍ନେନାହିଁ। କେହି ଦେବତା ବୋଲି ତା'ର ଜାଣିବାର ଉପାୟ ନାହିଁ। ମୁଁ ତୁମକୁ ଦେବତା ବୋଲି ଜାଣିବାର ଚେଷ୍ଟା ବି କରିବିନାହିଁ। ତୁମେ ମୋର ଦୁଃଖହରା ଆଶ୍ୱାସନାଟିଏ, ମୋର ସଂତାପହରା ବର୍ଷାବିନ୍ଦୁଟିଏ। ସ୍ନେହ ଅନୁରାଗର ପାବନୀ ପ୍ରବାହଟିଏ।

ମଣିଷ ଯେତେବେଳେ ମଣିଷର ଦୁଃଖକୁ ବୁଝିପାରେ, ଦୁଃଖୀକୁ ଦୁଃଖର କାରଣ ଭିତରେ ଦେଖିପାରେ, ସେ ଆଉ ମଣିଷ ହୋଇ ରୁହେନାହିଁ, ସେ ମୁହୂର୍ତ୍ତରେ ସେ ଦେବତା ହୋଇଯାଏ।

ଦୁଃଖର ସଂଜ୍ଞା ମୁଁ ଜାଣେନାହିଁ। ପୃଥିବୀରେ କୌଣସି ଏକ ଅସଫଳ ମୁହୂର୍ତ୍ତର ଅସ୍ୱସ୍ତିକର ଅନୁଭବ– ଯାହାକୁ ନେଇ ଆପଣା ସହ ବୁଝାମଣା କରିହୁଏ ନାହିଁ– ତାହାହିଁ ତ ଦୁଃଖ!

ହେ ଦୁଃଖହାରୀ! ଜୀବନର ସୁଖ ଦୁଃଖର ସାଥୀ ହୋଇ ତୁମେ କୁଆଡେ ତା'ର ସବୁ ଅନୁଭବର ସଂଗୀ ଥାଅ। ତା'ପାଇଁ ଦୁଃଖମୁକ୍ତିର ବାଟ ଖୋଜିଦିଅ।

ତୁମଭଳି ପରମ ବାଂଧବଟିଏ ଭେଟ ହେଲେ, ସବୁ ନିର୍ବାଂଧବତାର ଦୁଃଖ ଭୁଲିହୁଏ। ତୁମ ଭଳି ପରମ ଆତ୍ମୀୟଟିଏ ମିଳିଗଲେ ସବୁ ଅନାତ୍ମୀୟତାର ଶେଷ ଆସିଯାଏ।

ଅନ୍ତରାତ୍ମା ମୋର ଏକ ନଦୀ,
ଆଉ ତୁମେ ଅଗାଧ ସମୁଦ୍ର।

ଅନୁଭବ ସଂଗ୍ରହରେ ମୁଁ ସୁବିପୁଳ, ଶୀତଳ ଉତପ୍ତ, ମଧୁର ଓ ଲବଣାକ୍ତ। ପ୍ରଳୟ ପ୍ଲାବନ ପୁଣି ମୃଦୁମନ୍ଦ ଧାରା। ସବୁ ତୁମର ହିଁ ଦିଗ: ତୁମ ପାଖକୁ ପୁଣି ଫେରିଆସିଛି। ସମୁଦ୍ର ପାଖକୁ ନଦୀ। ଏ ଜନ୍ମର ପାପପୁଣ୍ୟ (ଯାହା ତୁମେ ନାଁ ଦେବ), ସଫଳତା ବିଫଳତା, ହସକାନ୍ଦ, ଆଶା ନିରାଶାକୁ, ତୁମ ଦୁଇ ପାଦତଳେ କୁଢ଼ାଇଦେଇ ତୁମ ଅଦେଖା ତୃତୀୟ ପାଦ ତଳେ ମୋର ନୈଷ୍କର୍ମକୁ, କର୍ମଫଳ

ସହ ନିର୍ଲିପ୍ତ ମୋର ଅନ୍ତରାତ୍ମାକୁ ନିବେଦନ କରିଦେଉଛି। ଏ ନଦୀଜଳରେ କେତେ ଆବିଳ ମାଳିନ୍ୟ, କେତେ ତୃଷାର ଜ୍ୱାଳା ଆଉ ତୃପ୍ତିର ସନ୍ତୋଷ ମିଶିଛି। କେତେ କୂଳଘାଟ, ଜୀବଜଗତ ପ୍ରକୃତି ତା'ର ଅନ୍ତର୍ବେଦନାରେ ମିଶିଛନ୍ତି, ନିଜ ପ୍ରତିଛବିଟି ଦେଖିଛନ୍ତି, ସେ ସବୁକୁ ଅନୁଭବର ପୁଷ୍ପାଂଜଳି କରି ତୁମ ରଂଗାଚରଣତଳେ ଅର୍ପିଦେଉଛି।

ସମ୍ମୁଖରେ ସୂର୍ଯୋତ୍‌ସବ! ଆଖିରେ ଆଖିଏ ଜ୍ୟୋତି। ଆଂଜୁଳିରେ ଭରପୂର ଖରା। କଣ୍ଠରେ ଓଁ ଭୂ ଭୂବ ସ୍ୱଃ ତତ୍ ସବିତୁର୍ବରେଣ୍ୟମ୍...

ଶାଶ୍ୱତ ଏଠି ମୁହୂର୍ତ୍ତ ଉପରେ ଉତୁରିପଡ଼ିଛି। ଅପୂର୍ବ କରୁଣା ସାକାର ଶ୍ରୀରାମ ହୋଇ ଅଭିରାମ ଆବିର୍ଭାବ ଘେନିଛି। ଧରଣୀ ପାଇଁ ଆକାଶର ଭବିଷ୍ୟତଟି ସ୍ୱଚ୍ଛୋଜ୍ଜ୍ୱଳ ଶୁଭ୍ରତାରେ ଉଦ୍‌ଭାସିତ ହୋଇଯାଇଛି।

ମୁଁ ଉଜ୍ଜ୍ୱଳ ତରଳ ଅଭିଭୂତିଟିଏ...

ସୁଧାମୟ ଆବେଶର ଆସ୍ୱାଦନଟିଏ...!!!

□ □ □

୧୯୯୦ – କଟକ।

# ବସୁଂଧରା

ଏ ପୃଥିବୀ ଯେମିତି ମୋ'ପାଇଁ ବୁଢ଼ୀ ହୋଇଯାଇଛି। ସେ ଯେପରି ଜାଣୁଛି, ମତେ ଭୁଲାଇ ରଖିବାର ଦିନଗୁଡ଼ାକ ତା'ର ସରିଆସୁଛି। ଏଇ ଗଛପତ୍ର, ଫୁଲ ପକ୍ଷୀ ନଈ ସମୁଦ୍ରର ଆକର୍ଷଣରେ ସେ ମତେ ଯାହା ବେଳେ ବେଳେ ତା' ପ୍ରତି ଟିକେ ସଚେତନ କରାଇଦେବ, ମାତ୍ର ଯେଉଁ ଅଜଣା ଆକର୍ଷଣରେ ମଣିଷର ମନକୁ ପୃଥିବୀ ଆଗଂତୁକ ଦିନର ଆଶା ମୋହରେ ବାଂଧିରଖେ, ସେ ମନ ପାଇଁ ସେ ମୋହକୁ ମୁଁ ତା ଭିତରେ ଆଉ ପାଇବିନାହିଁ।

ଆଉ ଏପରି କିଛି ନାହିଁ, ଯାହାକୁ ଅପେକ୍ଷା କରି ମୋ ଦିନରାତିକୁ ଏକାକାର କରିଦେବାରେ ମୁଁ ଏକାଗ୍ର ହୋଇଯିବି। କେବଳ ନିଜପାଇଁ ପୃଥିବୀର ଏ ଦିନରାତିକୁ ମତେ ନିର୍ବାହ କରିବାକୁ ହେବ। କେବଳ ନିଜପାଇଁ ବଂଚିବାର ମୋହକୁ ଜାଗରିତ କରିରଖିବାକୁ ହେବ।

ଏଣିକି ତ ଗୋଟି ଗୋଟି ହରାଇ ବସିବାର ବେଳମାନେ ହିଁ ଆସିବେ। ସେଇ ଛକଜାଗାଟିରେ ପହଂଚିଯିବା ପରେ ଆଉ ଅଗ୍ରଗତି ନାହିଁ, କେବଳ ବକ୍ରଗତି। ବୁଲାଣି ରାସ୍ତାରେ ଯେତେ ମୋଡ଼ ଫେରିଲେ ବି ଶେଷକୁ ସେଇ ଖୁଣ୍ଟି ପାଖରେ ଅଟକିଯିବା – ଯେଉଁଠି, ଯାହା ପାଇଛି ନପାଇଛି ସବୁର ହିସାବ ତଥାପି ଗୋଳମାଳ ହୋଇଯାଉଥିବ। ପାଇବାର ସଂଭାବନାମାନେ ହଜିଯାଇଛନ୍ତି। ହୁଏତ ଏଇଥିପାଇଁ ଯେ ସେ ପାଇବାର ଅର୍ଥ ବି ବଦଳିଯାଇଛି। ଯାହା ଯେତେବେଳେ ଯେଭଳି ମିଳିଲେ ପ୍ରାପ୍ତିର ତୃପ୍ତି ଆସେ, ସେଇ ସେଇ ପ୍ରାପ୍ତି-ରୂପ ଠିକ୍ ସେଇଭଳି ତୃପ୍ତି ହୋଇ ଜୀବନରେ ଆଉ ଆସିବନାହିଁ। ଛୋଟ ପିଲାଟି ମାଟି କଣ୍ଢେଇଟି ପାଇବାକୁ ହାତ ଲଂବେଇଦେଇଥିବାବେଳେ ଭାଂଗିଯିବାର ତତ୍ତ୍ୱ ଶୁଣାଇ ତା ହାତକୁ ଆଡ଼େଇଦେଲେ ସେ ଯେଉଁ ମର୍ମଦାହ ଅନିଭୋଗ କରେ, ପର ଜୀବନରେ ଆକାଶପରୀର ମଣିମାଣିକ୍ୟଖଂଚା ସୁନ୍ଦର ମୂର୍ତିଟିଏ ପାଇବାର ଆନନ୍ଦ ପାଇଥିଲେ ବି ସେ ଅପ୍ରାପ୍ତିର ଆଘାତକୁ ଭୁଲିପାରିନଥାଏ। ଛାତିତଳର କ୍ଷୋଭଟିକୁ ତଥାପି ଅସ୍ୱୀକାର କରିପାରେନାହିଁ। ମାଟି-କଣ୍ଢେଇଟିକୁ ଭୁଲିପାରେନାହିଁ। ତା' ପ୍ରତି ତା'ର ସରାଗ, ବ୍ୟାକୁଳତା ଓ ସମ୍ମୋହକୁ ଅବଚେତନରୁ ପୋଛିପାରେନାହିଁ। ସେଇ ଆଗ୍ରହ, ଅଭିଳାଷର ଉଦଗ୍ରତାରେ ହିଁ ତା'ର ପ୍ରାପ୍ୟର ମୂଲ୍ୟାଙ୍କନ, ମାଟି-କଣ୍ଢେଇର ଯଥାର୍ଥ ମୂଲ୍ୟ। ସବୁ ମନ ସବୁ ଜିନିଷକୁ ସବୁ ସମୟରେ ସମାନ ମୂଲ୍ୟ ଦେଇପାରେନାହିଁ।

ଏ ପୃଥିବୀ ତା ଆଖିରେ ମୂଲ୍ୟହୀନ, ତଥାପି ମୋର ସାତ ସରାଗର ଅମୂଲମୂଲ ସେଇ ମାଟି-କଣ୍ଢେଇକୁ ଆଉଥରେ ମତେ ଆଣି ଦେଇପାରିବନାହିଁ, ଏବଂ ତା'ର ସୁନା-କଣ୍ଢେଇକୁ ଯେ ମୁଁ ସେମିତି ତା'ରି ଆଖିରେ ମୂଲ୍ୟବାନ୍ ବୋଲି ବୁଝିପାରିଲିନାହିଁ, ଏକଥା ଜାଣିଥିବାରୁ ସେ ମଧ୍ୟ ନିଜେ ଭରସି ମୋ ପାଖରେ ତା'ର ଉପହାରକୁ ସମର୍ପି ପାରୁନାହିଁ।

ସେ ଶିଶୁମନକୁ ମୁଁ ହରାଇବସିଚି, ଯିଏ ମାଟି-କଣ୍ଢେଇଟି ଆଡ଼େ, ରଂଗିନ ବେଲୁନ୍ କିଂବା ହରରଂଗୀ ପ୍ରଜାପତିଟି ଆଡ଼େ ଉତ୍ସୁକ ଆଖି ଓ ଆଗ୍ରହୀ ହାତକୁ ନିର୍ବିଚାରରେ ବଢ଼ାଇଦେଇଥାଏ। ସେ ତରୁଣପ୍ରାଣଟିକୁ ମୁଁ ହଜାଇଦେଇଚି, ଯିଏ ଟୋପାଏ କାକରରେ ସମୁଦ୍ରକୁ ଉଚ୍ଛୁଳିପଡ଼ିବାର ଦେଖେ, ଫୁଲର ଗୋଟାଏ ପାଖୁଡ଼ାରେ ସ୍ୱର୍ଗର ମହକକୁ ପହଁରିଯିବାର ଦେଖେ, ପକ୍ଷୀର ଡେଣାରେ ଆକାଶକୁ କ୍ଷେପିଯାଏ ଓ ତାରାର ଆଖିରେ ଜନ୍ମାଂତରକୁ ନିରୀକ୍ଷଣ କରେ।

ଏ ଜୀବନ ଦିନେ ପୃଥିବୀର ଥିଲା। ନଈନାଳର, ଗଛପତ୍ରର, ଦାଣ୍ଡଧୂଳିର ଥିଲା। ଫୁଲର, ରଂଗର, ସଂଧ୍ୟା ସକାଳର ମାୟାଚ୍ଛନ୍ନ ଥିଲା। ସମୁଦ୍ରର, ଜହ୍ନର, ଆକାଶର ସ୍ୱପ୍ନମତ୍ତ ଥିଲା।

ସେ ଜୀବନ ଏକ ଅଦ୍ଭୁତ ଅଭିଜ୍ଞତାର ସମୁଦ୍ରକୁ ପହଁରି ପହଁରି ଆସିଛି। ଗୋଟିଏ ପାଦ ଜଳଂତା ନିଆଁଖଣ୍ଡରେ ତ ଆଉ ଗୋଟିଏ ପାଦ ବରଫଖାତ ଭିତରେ ପୋତିହୋଇ ରହିଛି। ମୋର ଆଖପାଖର ଜଗତ, ମୋର ଅନୁଭବର ଜଗତ ଗୋଟାଏ 'ମୁଁ'ର କେନ୍ଦ୍ରରେ ଅହରହ ଘୂରିବୁଲିଛି। ଅନ୍ୟମାନେ ସେଠି ଉପଲକ୍ଷ୍ୟ ମାତ୍ର। ଦୁଇହାତ ମେଲାଇ, ଚକାଭଉଁରୀ ଖେଳି କେତେ କ'ଣ ଛୁଇଁବାକୁ ଚେଷ୍ଟା କରିଛି। କ'ଣ ଧରିଛି, ଦେଖିନାହିଁ; ଛାଡ଼ିଦେଇଛି। କ'ଣ ଧରିପାରିନାହିଁ, ବୁଝିନାହିଁ, କେବଳ ଖୋଜିହୋଇଛି।

ଢେଉର ଆରମ୍ଭ ଖୋଜିବାକୁ ଯାଇ ସମୁଦ୍ରରେ ମିଳାଇଯାଇଚି। ଆକାଶର ଶେଷ ଦେଖିବାକୁ ଆଖି ମେଲାଇ ଅପେକ୍ଷାର ଦିଗ୍‌ବଳୟରେ ଆଙ୍କିହୋଇଯାଇଛି।

ଆକାଶରେ ଦିନରାତି ହୁଅନ୍ତିକି ନାହିଁ ଜାଣେନା, ମାତ୍ର ପୃଥିବୀର ଦିନରାତିସବୁ ଆକାଶର ଇସାରାରେ ବଦଳୁଥାନ୍ତି ବୋଲି ଜାଣେ। ପୃଥବୀର ରୂପ ! ତାକୁ ତ ଆକାଶର ଆଖି କେବଳ ଚିହ୍ନାଇଦେଇପାରେ। ପୃଥିବୀ ଆପଣା ରୂପକୁ କେବଳ ଆକାଶର ଆଖିରେ ଦେଖିପାରେ।

ପୃଥିବୀର ମାଟିକୁ ଆଶ୍ରୟ କରି ଜୀବନ ବଂଚେ, ମାତ୍ର ସେ ବଂଚିବାଟା କେବଳ ଆକାଶର ଭରସାରେ, ଆକାଶର ସ୍ୱପ୍ନରେ, ଉନ୍ମୁଖତାରେ।

ପୃଥିବୀ ସତରେ କ'ଣ କାହାକୁ ଧରିରଖିପାରେ ? କିଛି ଦେଇପାରେ ? ଆପଣାର ପାର୍ଥିବତା ପାଖେ ବଂଧା କେଡ଼େ ଦୀନା ଅସହାୟା ଏ ପୃଥିବୀ ! ଜୀବନର ଅପାର୍ଥିବ ସ୍ୱପ୍ନମାନଙ୍କୁ ସେ କିପରି ଛୁଇଁପାରନ୍ତା ?

ପୃଥିବୀରେ ଦେହଧରି କାହିଁକି ଭୁଲିହୋଇଯାଏ ଯେ ଜୀବର ଅଧିକାରର ସୀମା ସଂକୁଚିତ। ତା'ର ଅଭିଳାଷର ପରିସର ମଧ୍ୟ ସୀମିତ ହୋଇ ରହିବା ଦରକାର।

ଏ ପୃଥିବୀ ଉପରେ ଅଭିମାନର କିଛି ମାନେ ହୁଏନା। ଏକ ପକ୍ଷରେ ପୃଥିବୀ ଅସହାୟ, ଅନ୍ୟ ପକ୍ଷରେ ବଡ଼ ନିଷ୍ଠୁର। ହୁଏତ ଅସହାୟ ବୋଲି ହିଁ ନିଷ୍ଠୁର। ନିଜ ପାର୍ଥିବତାର ସୀମା ଚପିବାର ନିଷ୍ଫଳ ଆକ୍ରୋଶ ହିଁ ନିର୍ଦ୍ଦୟ ରୁକ୍ଷତାର ରୂପନିଏ।

ସେଇଥିପାଇଁ ତ ପୃଥିବୀ ପାଖରେ ଚୁପ୍ ହୋଇଗଲି। ପୃଥିବୀକୁ ଗୋଟି ଗୋଟି ସବୁକଥା ଶୁଣାଇବାକୁ ଯେ ବସିଥିଲି, ଏତେ ବଡ଼ ଆୟୋଜନର ସେ ନିଷ୍ଫଳତା ଆଜି ଯେମିତି ଆପଣା ପ୍ରୟାସକୁ ଉପହାସ କରୁଛି।

ଶ୍ରୋତା ବିନା କି ସଂଗୀତ! ସହୃଦୟତାର ଇଂଦ୍ରିୟଟି ସଜାଗ ନଥିଲେ ଡାକିବଜାଇ କାନଫଟାଇ ଚିତ୍କାର କରି ଲାଭ କଅଣ?

ଅଥଚ କି ବିଡ଼ଂବନା! ଏ ହୃଦୟହୀନା ପୃଥିବୀରେ କେବଳ ଟିକେ ସହୃଦୟତା ଖୋଜି ଖୋଜି ଜୀବନ ସରିଯାଏ।

ଏ ପୃଥିବୀ ମୋର ଅଭିମାନର ବି ଯୋଗ୍ୟ ନୁହେଁ। ହୃଦୟହୀନା ହୃଦୟର ମୂଲ୍ୟ ଦେଇପାରନ୍ତା କିପରି? ଅଥଚ ଏଇ କାଂଗାଳ ପୃଥିବୀ ପାଖରେ ଆଶା କରି, ହାତପତାଇ, ନିରାଶକ୍ଷୁବ୍ଧ ଅଭିମାନରେ ନିଜକୁ ଶୁଖାଇ ଜାଳିଦେଇଛି। ମୋର କି ମୂଲ୍ୟ ଦେବ, ମୋର ପ୍ରେମ ଅନୁରାଗ, ଆଶା ଅଭିଳାଷ ଓ ଅଧିକାରର କି ପ୍ରତିଦାନ ଦେଇପାରିବ ଏଇ ଅସହାୟ ପୃଥିବୀ ଓ ତା'ର ନିଃସ୍ୱ ଅଧିବାସୀ?

ମୁଁ ଯେ ରାଜରାଣୀ!

ଅନଂତ ପ୍ରେମର ବିପୁଳ ପ୍ରାସାଦ ତଳକୁ ଓହ୍ଲାଇ ଆସି କି କାଂଗାଳ ଆଶାର ଭଂଗାକୁଡ଼ିଆ ପାଖରେ ଠିଆହୋଇ ସାରା ଦୁନିଆଁର ତୁଚ୍ଛ ତାଚ୍ଛଲ୍ୟ ଶୁଣୁଛି?

ଏ ପୃଥିବୀ ଖାଲି ଆକାଶର ଇନ୍ଦ୍ରଧନୁ ନୁହେଁ, ସୂର୍ଯ୍ୟଚନ୍ଦ୍ର କେବଳ ନୁହନ୍ତି, ପୂରାପୂରି ଆକାଶଟାକୁ ବାଢ଼ିଦେବାର ପ୍ରଲୋଭନ ଦେଖାଇ ଉପରକୁ ଉଠାଇନେଇଛି। ମାତ୍ର ତା'ର ନେଳି ଭିତରେ ଆପେ ଦିଗ ହରାଇ ମତେ ଅସହାୟ ବିମୂଢ଼ ସୂତାକଟା ଗୁଡ଼ି କରି ଏକା ଛାଡ଼ିଦେଇଛି।

ପୁଣି ଖାଲି ରତ୍ନ ନୁହେଁ, ଅମୃତକୁ ବି ପ୍ରଲୋଭନର ଥୋପ ସଜାଇ ମତେ ଅତଳତଳକୁ ପଠାଇଦେଇଛି। ଅମୃତକୁଣ୍ଡର ଅଗ୍ନିବଳୟ ସମ୍ମୁଖରେ କିଂତୁ ନିଜେ ଠିଆ ହୋଇପାରିନାହିଁ। ସେ ନିଆଁର ଧାସରେ ଝାସଦେବାକୁ କହି ଅଣନିଃଶ୍ୱାସୀ ହୋଇ ବୁଡ଼ିମରିବାକୁ ମତେ ଏକା ଛାଡ଼ି ଚାଲିଯାଇଛି।

ସେଇଥିପାଇଁ ତ ଯେତେ ସମ୍ମୋହନର ଗାନ କରି ବାରବାର ଭୁଲାଇ ରଖୁଥିଲେ ବି ବେଳେ ବେଳେ ଠିକ୍ ମନେହୋଇଛି ପୃଥିବୀରେ ଏଭଳି କିଛି ମୂଲ୍ୟବାନ୍ ଐଶ୍ୱର୍ଯ୍ୟ ନାହିଁ, ଯାହା ପାଇଁ ନିଜ ମୂଲ୍ୟକୁ ବିସର୍ଜିଦେବା, ନିଜକୁ ଗ୍ଲାନିପୀଡ଼ିତ କରିଦେବା ଯଥାର୍ଥ ହୋଇପାରେ। ସବୁ ମୂଲ୍ୟ ଜୀବନର ଆପଣାକୁ କଳନା କରିବାର ମାପ

ପାଖରେ ନ୍ୟୂନ ହୋଇପଡ଼ନ୍ତି। ଜୀବନ ସେଠି ଆପଣାକୁ ହିଁ ତା'ର ପରମମୂଲ୍ୟରେ, ଅମୂଲ୍ୟତାରେ ଚିହ୍ନେ।

ଏବେ ତେଣୁ ପୃଥିବୀ ପାଖରେ ଓଠ ଚାପିଦେଇ ଆଖି ଦୁଇଟାକୁ ଆକାଶ ଆଡ଼େ ମେଲାଇଦେଇଛି। ଆକାଶ ଯଦି ଶୁଣିପାରେ! ଶବ୍ଦମାନେ ସେଠି ଆତଯାତ ହୁଅନ୍ତି ପରା! ଭାବମାନେ ଶୂନ୍ୟ ସମୁଦ୍ରରେ ଲହରେଇ ଉଠନ୍ତି ପରା!

ପୃଥିବୀରେ ପୂରାପୂରି ବାଂଧିହୋଇ ରହିଛି ବୋଲି ଅଣନିଃଶ୍ୱାସୀ; ଅଥଚ ନିଜ ଭାରକୁ ଆକାଶକୁ ସମର୍ପିଦେଇ ପାରିନାହିଁ ଯେ ମାଟିରୁ ଗୋଡ଼ ଉଠାଇନେଲେ ନେଳିରେ ପହଁରିଯିବି।

ମାତ୍ର ଆକାଶକୁ ଭଲପାଇବାର ଏ ଅଦ୍ଭୁତ ନିଶା, ଏ ଦୁର୍ବାର ଆବେଗକୁ କିଏ କାହିଁକି ମୋ ଭିତରେ ଜଗାଇଦେଲା? ଆକାଶ ଯେ କିଛି ବି ଗ୍ରହଣ କରେନାହିଁ—ପୃଥିବୀର ପ୍ରେମକୁ ବି ନୁହେଁ। ସବୁ ଜଳକୁ ବର୍ଷାବିନ୍ଦୁ କରି, ସବୁ ଧ୍ୱନିକୁ ଶବ୍ଦ-ସ୍ୱନିତ କରି ସେ ପୃଥିବୀକୁ ପୁଣି ଫେରାଇଦିଏ। କାହିଁକି ତେବେ ପୃଥିବୀର ଏ ଅକ୍ଳାଂତ ଆୟୋଜନ, ଦିବାରାତ୍ର ଅଂଗସଜ୍ଜା, ଛଂଦ ସମାରୋହ, ଲାବଣ୍ୟ ସଂଭାର?

ପୃଥିବୀ କ'ଣ ଚିରଦିନ କେବଳ ଯାଚନାର ପ୍ରସାରିତ କର ହୋଇ ରହିଥିବ? ସମର୍ପିତ ହେବାର ଅନୁଭବ ପାଇବନାହିଁ? ନିଜକୁ ସମର୍ପଣ କରି ନପାରିଲେ, ଆକାଶ ପାଖରେ ଢ଼ାଳିହୋଇ ନଗଲେ ପୃଥିବୀର ସବୁ ପ୍ରେମ ଯେ ଅର୍ଥହୀନ ହୋଇଯିବ? ଆକାଶର ସ୍ଥିର ଆଖିରେ ପୃଥିବୀର ଚଂଚଳା ରୂପଟି ନବ ନବ ବିସ୍ମୟର ମୁଗ୍ଧ ସାଜଟିରେ ଆବିର୍ଭୂତ ହୋଇ ନପାରିଲେ, ପୃଥିବୀର ସବୁ ରୂପସଂଭାର ନିରର୍ଥକ ହୋଇଯିବ। ପୁଣି ଶିଶିରବିନ୍ଦୁରେ, ନଦୀ ସମୁଦ୍ରରେ, ଅଜସ୍ର ରୂପରେ ଆକାଶର ଅପରୂପତାକୁ ନିଜ ପାଖରେ ଭେଟି ନପାରିଲେ ଆକାଶର ଅରୂପ ଐଶ୍ୱର୍ଯ୍ୟର ରହସ୍ୟକୁ ସେ କିଛି ବି ବୁଝିପାରିବନାହିଁ।

କେତେଦିନ ପୃଥିବୀର ଭବିଷ୍ୟତ ଆକାଶ ହୋଇ ରହିଥିବ? ଆକାଶ ପୃଥିବୀ ଉପରକୁ ଓହ୍ଲାଇ ଆସିବନି? ପୃଥିବୀ ଆକାଶକୁ ଉଠିଯାଇପାରିବନି?

ଆକାଶର ଅରୂପତାକୁ ପୃଥିବୀରେ ପାଇବାର ଅର୍ଥ ତ କିଂତୁ ମାତ୍ର ଗୋଟିଏ—ରୂପ! ପୃଥିବୀର ସବୁ ଅନୁଭବ ରୂପକୁ ଘେରି, ସତ୍ୟର ସବୁ ଉପଲବ୍ଧି ରୂପାଶ୍ରିତ। ଅରୂପର ସେ ତତ୍ତ୍ୱବିଚାର କରେ, ମାତ୍ର ରୂପରେ ଆସ୍ୱାଦନ ନକରିବା ପର୍ଯ୍ୟଂତ ଅରୂପର ରହସ୍ୟ ମାଧୁର୍ଯ୍ୟକୁ ସେ କିଛି ବି ଅନୁଭବ କରେନାହିଁ। ପ୍ରେମ ଆଉ ଆନଂଦ, ଆଶା ଆଉ ଅଭିଳାଷ, ନୈରାଶ୍ୟ ଓ ବ୍ୟର୍ଥତା ହସ ରୂପେ, ଅଶ୍ରୁ ରୂପେ, ତା' ଓଠରେ ଆଖିରେ ଆବିର୍ଭୂତ ନହେବା ପର୍ଯ୍ୟଂତ ସୁଖ ଦୁଃଖର କଥା ସେ କିଛି ବି ବୁଝେନାହିଁ। ପ୍ରେମ ରୂପ ଧାରଣ କରି ଆଖିଆଗରେ ଆତଯାତ ନହେଲା ପର୍ଯ୍ୟଂତ ନିଜ ଛାତିତଳର କଥାମାନଙ୍କୁ ମଧ୍ୟ ସେ ଶୁଣିପାରେନାହିଁ। ପ୍ରେମ ବ୍ୟକ୍ତିକୁ ଟାଣିନେଇପାରେ ଆକାଶକୁ, କିଂତୁ ସେଥିପାଇଁ ତାକୁ ପ୍ରଥମରେ ଧରାଧାମରେ ରୂପଧାରୀ

ହୋଇ ଠିଆ ହେବାକୁ ପଡ଼ିବ। ବାସନାକୁ ତା'ର ସ୍ଥୂଳତମ ରୂପରେ ଜାଗରିତ କରି ନଥିଲେ ଆଧ୍ୟାତ୍ମିକତାର ସୂକ୍ଷ୍ମତମ ଉପଲବ୍ଧି ପାଇଁ ପ୍ରେମ ସମର୍ଥ ହେବନାହିଁ। ଆଉ ପୃଥିବୀକୁ ଅତିକ୍ରମ କରିଯିବ, ପାର୍ଥିବ ଦେହ ସେ ଶକ୍ତି ଏ ଯାବତ୍ ଅର୍ଜିପାରିନାହିଁ। ପୃଥିବୀକୁ ଦେହ ଧରିବାକୁ ଆସି ସ୍ୱୟଂ ଈଶ୍ୱର ବି ତା ନିୟମରେ ବଂଧା ପଡ଼ିଯାନ୍ତି। ପୃଥିବୀ ଯେ ପର୍ଯଂତ ତା'ର ପାର୍ଥିବ ସୀମାକୁ ଉଲ୍ଲଂଘନ କରିପାରିନାହିଁ, ପୃଥିବୀର ଜୀବ ତାକୁ ଅସ୍ୱୀକାର କରି ଅପାର୍ଥିବତାର ସତ୍ୟତାକୁ ବାସ୍ତବ ଭିତ୍ତିରେ ଠିଆ କରିପାରିବନାହିଁ।

ପୃଥିବୀର ସ୍ୱତଂତ୍ର ପରିଭାଷାରେ ବ୍ୟକ୍ତ ନହେବା ପର୍ଯଂତ ସବୁ ଅପାର୍ଥିବତା ମିଛ।

ଅଂଗରେ ଧାରଣ ନ କରିବା ପର୍ଯଂତ ଅନଂଗର ରହସ୍ୟକୁ ପୃଥିବୀ କିଛି ବି ବୁଝେନା ଏବଂ ପୃଥିବୀରେ ଅଂଗଧାରଣ ନକରିବା ପର୍ଯଂତ ଅନଂଗ ନିଜ ରହସ୍ୟ ନିଜକୁ ବି ବୁଝାଇପାରେନା।

ଏ ପୃଥିବୀ ଭଲପାଇବା ସତରେ କେତେ କମ୍ ଜାଣେ! ଅଥଚ଼ ଏ ପୃଥିବୀ ଭଳି ଆଉ କିଏ ଭଲପାଇବାର ଯଂତ୍ରଣାକୁ ଏତେ ବେଶି ଭୋଗିଛି ?

ମନ ପ୍ରାଣ ହୃଦୟ – ଅନେକ ତ ଦେଇଛି ଏମାନଙ୍କୁ – ପ୍ରତିଦାନରେ ଆଖି ଲୁହ।

ଆଉ ଦେହ – ଯାହାକୁ ଅବଜ୍ଞାର ଆଖିରେ କେବଳ ଅବହେଳା ଫିଙ୍ଗିଚାଲିଛି – ଏ ଜୀବନରେ ଯଦି କିଛି ବି ପ୍ରାପ୍ତିର ଅନୁଭବ ଥାଏ, ତା କେବଳ ତା'ରି ଅନୁଗ୍ରହ। ବା଼ଃ !

ଅଥଚ଼ ପାଇଛି ବୋଲି ମନ ନଜାଣିଲା ପର୍ଯଂତ, ହୃଦୟ ନବୁଝିଲା ପର୍ଯଂତ, କେଉଁ ପାଇବା ବି ପାଇବା ନୁହେଁ। ପାଇବାଟାକୁ ଦ୍ରବ୍ୟ ପ୍ରତିପାଦନ କରେନାହିଁ, କରେ ହୃଦୟ, କରେ ମନ। ଆଉ କରେ ମୁହୂର୍ତ୍ତ !

ମଣିଷ-ଶିଶୁର ଜନ୍ମବେଳର ପ୍ରଥମ ସ୍ୱପ୍ନ ଥାଏ ସେ ଜୀବନର ଚୂଡ଼ାଗ୍ରରେ ଉଭାହେବ। ମରଣର କ୍ଷଣରେ ସେ ଆବିଷ୍କାର କରେ ସେ କେବଳ ତା'ର ପାର୍ଶ୍ୱ ପରିକ୍ରମା ହିଁ କରୁଛି।

ଏ ପୃଥିବୀରେ କୋଉ ସ୍ୱପ୍ନର ବା ଚରିତାର୍ଥତା ଘଟେ ? ଅଥଚ଼ ଚରିତାର୍ଥ ହୋଇପାରେନାହିଁ ବୋଲି ସିନା ଏ ପୃଥିବୀକୁ ଘେରି ପାର୍ଥିବ ଜୀବନର ଏତେ ସ୍ୱପ୍ନ-ସମାରୋହ। ଏ ପୃଥିବୀକୁ ଘେରି ସବୁ ସ୍ୱପ୍ନର ଉଦ୍‌ଭବ, ଆଉ ସ୍ୱପ୍ନଭଂଗର ଉପଲବ୍ଧି।

ସବୁଜ ସ୍ୱପ୍ନର ମୋହ କି ଦୁରଂତ କଣ୍ଟାଗଛଖିଆ ରକ୍ତାକ୍ତ ଓଟର ଓଠ ହିଁ ବୁଝେ।

ସେ ସ୍ୱପ୍ନମାନେ ପ୍ରଶ୍ନ ହୋଇ ଉତ୍ତର ଖୋଜିବାକୁ ଧରାବତରଣ କରନ୍ତି। ଜୀବନର ସବୁ ପ୍ରଶ୍ନର ଉତ୍ତର ଯେ ଗୋଟି ଗୋଟି ଏଇ ପୃଥିବୀରୁ ଖୋଜିବାକୁ ହେବ। ଜୀବନରୁ ସବୁ ମିଳିଯାଉଥିଲେ, ପୃଥିବୀ ସବୁ ଦେଇପାରୁଥିଲେ ଆଉ ପ୍ରଶ୍ନ କାହିଁକି ଜାଗରିତ ହେଉଥା'ନ୍ତା ?

ଏ ପୃଥିବୀ ଯାହା ଦେବ, ସବୁ ତ କଡ଼ାକ୍ରାଂତି କରି ଜୀବନରୁ ଆଦାୟ କରିନେବ। ପୂରାପୂରି ଦେଇଦେବାଭଳି ସଂଭାର ତା'ର କାହିଁ? ଅନାଗତ ସୃଷ୍ଟିକୁ ସଂଭାଳି ରଖିବାକୁ ତା'ର ଆଉ ଅବଶିଷ୍ଟ ସଂବଳ କାହିଁ? ସେଇଥିପାଇଁ ତ ପଞ୍ଚଭୂତକୁ ପଞ୍ଚମହାଭୂତରେ ମିଳାଇଯିବାକୁ ହୁଏ।

କେବଳ ଅନୁଭବ ଟିକକ। ଅନୁଭବମାନଂକୁ ଏକମାତ୍ର ନିଜସ୍ୱ କରି ଜୀବନ ଧରଣୀରୁ ବିଦାୟ ନିଏ। ପୁଣି ସେଇ ଅନୁଭବର ଅର୍ଥ ଖୋଜିବାକୁ ଧରଣୀକୁ ସମାଗତ ହୁଏ।

ସେ ଅର୍ଥ ଖୋଜାର ଭାଗ୍ୟ କ'ଣ ନୀଳଘନ ନା ମରୁଦ୍ୟାନ? ମରୁଭୂମି ନା ମୃଗତୃଷ୍ଣା? ଚୋରାବାଲି ନା ବେଳାବାଲି?

ମରୁଯାତ୍ରୀ ହୋଇ ସ୍ୱୟଂ ଜୀବନକୁ ଯେ ଏ ମରୁପୃଥିବୀକୁ କେଉଁ ମରୁଝରର ସଂଧାନରେ ଅହର୍ନିଶ ଘୂରିବାକୁ ପଡ଼େ, ସେ ଖୋଜିବାର କ'ଣ ଶେଷ ଥାଏ?

କିନ୍ତୁ ସବୁ ମରୁଭୂମି ମରୁଦ୍ୟାନକୁ ପ୍ରାଣାଂତ ଖୋଜିହେଉଥିବା ବେଳେ କେହି କ'ଣ ମରୀଚିକାକୁ ବକ୍ଷରେ ଧାରଣ କରିବ ବୋଲି ଆପଣାକୁ ଏମିତି ମରୁଭୂମିରେ ରୂପାନ୍ତରିତ କରେ?

× × × ×

ମରୁଦ୍ୟାନର ଆଶା ଭିତରେ ମରୀଚିକା ମୋହମୟୀ ହୋଇଯାଏ। ମରୀଚିକା ଯେ ମରୁଦ୍ୟାନ ନୁହେଁ, ସେତିକି ଜାଣିବା ପାଇଁ ସାରା ମରୁଭୂମି ଏମିତି ଘୂରିବାକୁ ପଡ଼େ।

ବୁଝିନେବାକୁ ହୁଏ, ଆଶା-ମରୀଚିକା ନଥିଲେ ମରୁଯଂତ୍ରଣାକୁ ମରୁଯାତ୍ରୀ ପୂରା ଠିକ୍ କେବେ ବି ବୁଝିପାରନ୍ତାନାହିଁ। ବ୍ୟର୍ଥତାକୁ ନଭେଟିଲେ ଜୀବନ ଆପଣାର ଅଦ୍ଭୁତ ବଂଚିବାର ଶକ୍ତିକୁ ଆବିଷ୍କାର କରିପାରନ୍ତା ନାହିଁ।

ଜାଣି ହୁଅନ୍ତା ନାହିଁ ଯେ, ଆକାଶଭରା ବର୍ଷା ବି ମରୁଭୂମିର ଶୋଷ ମେଣ୍ଟାଇପାରିବନାହିଁ। ଶୁଷ୍କ ମରୁକୁ ସଜଳ ଶ୍ୟାମଳ କରିପାରିବନାହିଁ। ମରୁଜୀବନର ଯାହା ବି ଆର୍ଦ୍ରତା ସଂଭବ, ତା କେବଳ ତା'ରି ଅନ୍ତଃସଂଜାତ ମରୁଝରର ଟୋପାଏ ଜଳବିନ୍ଦୁ କରିପାରେ। କିଛି ତୃଷ୍ଣା ନିବାରଣ, କିଛି ଶୀତଳ ଆଶ୍ୱାସନା, କିଛି ମଧୁର ଅନୁଭବ ମରୁଭୂମି ଆପଣାର ମରୁଝରରୂପୀ ଜୀବନ-ରସରୁ ହିଁ ପାଏ, ବର୍ଷଂତ ଆକାଶରୁ ନୁହେଁ।

ମରୁଭୂମିର ତା ନିଜ ଛଡ଼ା ଆଉ କାହାରି ସାଧ ନାହିଁ ତାକୁ ମରୁସନ୍ତାପରୁ ଉଦ୍ଧାର କରିବାକୁ।

ଆଉ ମରୁଯାତ୍ରୀ ପାଇଁ ମରୁଭୂମିଟାଇ ସତ୍ୟ, ମରୀଚିକା ବା ମରୁଦ୍ୟାନ ନୁହନ୍ତି। ସେମାନେ ଆକସ୍ମିକ, ବାଟହାବୁଡ଼ା। ଗୋଟାକ ପାଇଁ ନିରନ୍ତର ଆଉ ଗୋଟାକ ପଛରେ ଧାଉଁଥିବା ବେଳେ କେଉଁଟା କେତେବେଳେ ହାବୁଡ଼ିପଡ଼ନ୍ତି।

ମାତ୍ର କେହି ମରୁଯାତ୍ରୀକୁ ଯାତ୍ରା ଶେଷର ଗାନ ଶୁଣାଇପାରନ୍ତି ନାହିଁ। ମରୁଭୂମିଟା ପାରହେବା ମରୁପଥିକର ଲକ୍ଷ୍ୟ– ମରୁଦ୍ୟାନ ଉପଲକ୍ଷ୍ୟ ମାତ୍ର। ଆଉ ସେଇଥିପାଇଁ ମରୀଚିକାର ଛଳନା ବି ତାକୁ ସହିବାକୁ ହୁଏ। ମାତ୍ର ମରୁଭୂମିକୁ ଥରେ ପାରହୋଇଗଲେ ମରୁଦ୍ୟାନର ପ୍ରୟୋଜନ ସରିଯାଏ। ମରୀଚିକାର ମୋହ ମଧ ଆଉ ଆସେନାହିଁ।

ସମ୍ମୋହମାନେ ତ ପ୍ରତି ନିୟତ ଗଢ଼ାହେଉଥାନ୍ତି, ଭାଂଗୁଥାନ୍ତି। ସମୟ ଆସେ, ଯେତେବେଳେ ମନେହୁଏ, ଏକମାତ୍ର ଜୀବନାତୀତ ହିଁ ବୋଧହୁଏ ଜୀବନକୁ ଶେଷପର୍ଯଂତ ସମ୍ମୋହିତ ରଖିପାରେ।

ଯେ ପର୍ଯଂତ ଜଗତରୁ କେଉଁ ରୂପରେ ହେଲେ ଜୀବନ ପାଇଁ କିଛି ଆଘାତର ଅବକାଶ ରହିଛି, ସେ ପର୍ଯଂତ ସେଇ ରୂପ ସଂପର୍କରେ କିଛି ଭ୍ରାଂତି, କିଛି ମୋହାସକ୍ତି ମନ ଭିତରେ ନିଶ୍ଚୟ ରହିଯାଇଛି।

ଜଗତ ସଂପର୍କରେ ଯେଉଁ ମୁହୂର୍ତରେ ସମ୍ମୋହନମାନେ ଗୋଟି ଗୋଟି କେବଳ ତୁଟିବାକୁ ଆରମ୍ଭ କରନ୍ତି, ଅଥଚ ନୂଆ ରୂପ ପାଇପାରନ୍ତିନାହିଁ, ଜୀବନ ସେତେବେଳେ ଆପଣାକୁ ଚିହ୍ନିବାକୁ ଆରମ୍ଭ କରେ।

× × × ×

ତୋର ନିଜର କି ମୂଲ୍ୟ ଅଛି ପୃଥିବୀ ? ତୋତେ ଯେତିକି ମୂଲ୍ୟ ମୁଁ ଦେବି ମୋ ପାଇଁ ତୁ ସେତିକି ମୂଲ୍ୟବାନ୍। ତୋ ମାଟି ଗୋଡ଼ି ଧାତୁ ପଥରକୁ ମୁଁ ମହାର୍ଘ କରିଦେବି, ତୁଛତାଛଲ୍ୟରେ ଗୋଡ଼ରେ ଆଡ଼େଇଯାଇ ପାରିବି। ତୋର ଆଘାତରେ ମୁଁ ଭାଂଗିଯିବି କି ତୋର ସେ ଆଘାତ କରିବାର ଶକ୍ତିକୁ ଭାଂଗିଦେବି, ତା ମଧ ମୋ ଉପରେ ନିର୍ଭର କରେ। ମୁଁ ନଚାହିଁଲେ, ମୁଁ ନିମଂତ୍ରଣ ନକଲେ, ମୁଁ ସୁବିଧା ନଦେଲେ ତୁ ମୋର ଛାଇ ସୁଦ୍ଧା ମାଡ଼ିପାରିବୁନାହିଁ।

ମୁଁ ନୁହେଁ, ମୋର ଛାଇଟା ଉପରେ ମାତ୍ର ତୋର କିଛି ଅଧିକାର ଅଛି। ସେ ଛାଇକୁ ତୁ କବଳିତ କରିପାରୁ, ଆତ୍ମସାତ୍ କରିପାରିବୁ ନାହିଁ। ମତେ ତୋର କରି ରଖିବା ଭଳି କିଛି ବି ତୁ ଦେଇପାରିବୁନାହିଁ, ସେ ପାଇବାର କଳ୍ପିତ ରୂପକୁ ମୁଁ ମନରେ ତିଆରି ନକଲେ। ମୋର ଯାଚ଼ନା ନଥିଲେ ତୋର ଦାନ ବି ଅର୍ଥହୀନ। ତୁ ଖୁବ୍ ବେଶିରେ ଗୋଟାଏ ସମ୍ମୋହନ। ତୁ ମତେ ପରୀକ୍ଷା କରୁନାହିଁ। ତୋର ମାଟିଗୋଡ଼ର ଅହଂକାରର ପରୀକ୍ଷା କେବଳ ଯୁଗ ଯୁଗ ଧରି ମାନବାତ୍ମା ପାଖେ ଦେଇଆସିଛୁ। କେବେ ତାକୁ ପୂରା ବାଂଧିପାରିନାହୁଁ। ଅତି ଅସହାୟ ଅସମର୍ଥ ତୋର ଲାଳିତ ଓ ତୋର କ୍ରୀଡ଼ନକ ମନେହେଉଥିବା ଏଇ ମାନବର ଶିଶୁଆତ୍ମା କିନ୍ତୁ ତୋର ଆକର୍ଷଣକୁ ଅସ୍ୱୀକାର କରି ଖସି ଚାଲିଆସିଛି, ତୁ ତା'ର ପଥରୋଧ କରିପାରିନାହୁଁ।

ପୃଥିବୀ, ତୁ ମୋର ମୂଲ୍ୟ କଳିପାରିବୁନାହିଁ କେବେ ବି। ମାତ୍ର ମୁଁ ତୋର ମୂଲ୍ୟ ଠିକ୍ ଆକଳନ କରିନେବି। ଯେତେ ଦୁର୍ମୂଲ୍ୟତାର ଛଳନା ଭିତରେ ନିଜକୁ ସଜାଇ ରଖିବାକୁ ଚେଷ୍ଟାକଲେ ବି ତୋର ପ୍ରକୃତ ମୂଲ୍ୟକୁ ତଥାପି ମୁଁ ମୁହୂର୍ତ୍ତ ମୁହୂର୍ତ୍ତ ଚିହ୍ନିନେଉଥିବି। ତୋର ମୂଲ୍ୟହୀନତାର ଶେଷ ଚିହ୍ନ ପର୍ଯ୍ୟଂତ ପୃଥିବୀରୁ ଜୀବନର କାମ ଶେଷ ହେବନାହିଁ।

ମାତ୍ର ପୃଥିବୀ, ତୋର ମୂଲ୍ୟହୀନତାର ଅନ୍ତରାଳରେ ଯେ ତୋର ଅମୂଲ୍ୟ ଅପାର୍ଥିବ ସ୍ୱପ୍ନଟି ଗୁପ୍ତ ରହିଚି, ତାକୁ ମୁଁ ଠିକ୍ ଧରିନେବି, ଆଦରିନେବି।

ପୃଥିବୀ, ଜାଣିରଖ, ତୁ ମତେ କେବେ କିଛି ଦେଇପାରିବୁନାହିଁ। ମୁଁ କିନ୍ତୁ ତତେ ଦେଇପାରିବି – ଭଲପାଇବା, ପ୍ରେମ!

କାହାକୁ ଭଲପାଇବା ମାନେ ତ ତା'ର ଅସମର୍ଥତାକୁ ବୁଝିନେବା, ସହିନେବା, ଯତ୍ନନେବା, ନିଜକୁ ତା ପାଇଁ ଆଉ ଟିକେ ପ୍ରୟୋଜନୀୟ କରିଦେବା।

ହୃଦୟରେ ପ୍ରେମର ଅଭିଷେକ ଘଟିଗଲେ ତୁଚ୍ଛାତିତୁଚ୍ଛ ଅସାର ବି ପ୍ରାଣସାର ହୋଇଉଠେ।

ପୃଥିବୀ! ଜାଣେ ତତେ ପାର୍ଥିବ ମୂଲ୍ୟ ଦେଇ ସଂତୁଷ୍ଟ କରିହେବନାହିଁ। ତୁ ଯାହା ଦେବୁ ସବୁ ପାର୍ଥିବ, ଅଥଚ ନେବୁ ସବୁ ଅପାର୍ଥିବ, ହୃଦୟର ପ୍ରେମ।

ଏ ଜୀବନ ପୃଥିବୀ ବକ୍ଷରେ ଜନ୍ମାବଧି କେବଳ ତ ପ୍ରେମର ସାଧନା କରିଆସିଛି। ପୃଥିବୀର ଅକ୍ଷମତା, ଅପୂର୍ଣତା ସତ୍ତ୍ୱେ ଦିନେ ସେ ପ୍ରେମର ପ୍ରତ୍ୟୁତ୍ତରଟିଏ ହୋଇ ଉଚ୍ଚାରିତ ହେବବୋଲି। ଏ ଭରସା ଜୀବନ କାହାଠାରୁ କିପରି ପାଇଲା ଜାଣେନା, କିନ୍ତୁ ସକଳ ବିରୋଧ ସତ୍ତ୍ୱେ ସୃଷ୍ଟି ଭିତରୁ ଏ ପ୍ରତ୍ୟୟଟି ବଳବତ୍ତର ଭାବେ ଜାଗିଉଠୁନଥିଲେ ପୃଥିବୀ ହୁଏତ ତା'ର ଆରମ୍ଭ ବେଳରୁ ଶେଷ ହୋଇଯାଇସାରିଥାନ୍ତା।

ଏ ପୃଥିବୀ ତ ଆପଣାଠାରେ ଆବଦ୍ଧ କ୍ଷୁଦ୍ର ବାଲିକଣାଟିଏ – ଆପଣାଠାରେ ନିଃଶେଷିତ। ମାତ୍ର ସେ ବାଲିକଣାରେ, ପବନରେ, ମହାଶୂନ୍ୟରେ, ମହାନ୍ଧକାରର ସ୍ତର ସ୍ତରରେ ପରିବ୍ୟାପ୍ତ ଯେ ଘନୀଭୂତ ପ୍ରେମ, କିଏ ତାକୁ ଅସ୍ୱୀକାର କରି, ତା'ଠାରୁ ନିଜକୁ ବିଚ୍ଛିନ୍ନ କରି ରଖିବ ତ କରୁ।

ଏ ପୃଥିବୀ ଆକାଶର ଭାଷା ବୁଝିପାରେନାହିଁ। ବୁଝାଇପାରେନାହିଁ ବି ଆକାଶକୁ ନିଜର ଭାଷା। ଆକାଶ ସଂଗେ ପୃଥିବୀର ସବୁ ବୁଝାମଣାର ଭାଷାକୁ ତେଣୁ ପ୍ରେମକୁ ହିଁ ସମର୍ପିଦିଆଯାଏ।

ସେ ପ୍ରେମ ତ ଅନଳକୁଣ୍ଡଟିଏ – ଯାହା ସମ୍ମୁଖରେ ଜୀବନ ପାଇଁ ସେ ସତ୍ୟ ସାଧନାର କଣ୍ଟକାସନଟି ସଜ୍ଜିତ।

ସତ୍ୟ ସାଧନାର ସ୍ଥିରାସନ ଉପରେ ଯେ ସତ୍ତାକୁ ଏକାକୀ ଆସୀନ ହେବାକୁ ପଡ଼େ। ଅନୁଭବର ଶରଶଯ୍ୟା ଉପରେ ଭୀଷ୍ମଙ୍କୁ ଏକାକୀ ଶୋଇ ରହିବାକୁ ହୁଏ। ସୀତାକୁ ଏକାକୀ ଅଗ୍ନିପ୍ରବେଶ, ପାତାଳ ପ୍ରବେଶ କରିବାକୁ ହୁଏ।

ବୁଝିନେବାକୁ ହୁଏ ଯେ ନିଆଁ ଭିତରେ ନପଶିଲେ, ବହ୍ନିସ୍ନାତ ନହେଲେ, ଅଗ୍ନିପରୀକ୍ଷା ସଂପୂର୍ଣ୍ଣ ହୁଏନାହିଁ। ଦୂରରୁ ନିଆଁ ସୁନ୍ଦର, ଉଜ୍ଜ୍ୱଳ, ନିକଟରୁ ତପ୍ତ ଦାବାନଳ। ନିଆଁ କ'ଣ ସେ କଥା ନିଆଁ ନୁହେଁ, ଭସ୍ମକଣା କେବଳ ଜାଣେ।

ଭସ୍ମକଣା କିନ୍ତୁ କହିପାରେନାହିଁ। କହିବା ଭଳି ତା'ର ଆଉ କିଛି ନଥାଏ। ତଥାପି, ଯେଉଁ ଦେବାର୍ଚ୍ଚନା-ପୀଠରେ ସେ ସମିଧର ସ୍ନିଗ୍ଧଶିଖା ହୋଇ ଝଲସିଉଠିଥାଏ, ସେଇ 'ସତ୍ୟ'-ଦେବତାର ବିଭୂତି ଧୂଳି ରୂପେ ତା'ର ନବନ୍ୟାସ ଘଟେ।

ପୃଥିବୀ ଆଉ କେବଳ ପୃଥିବୀ ହୋଇ ରହେ ନାହିଁ– ସ୍ୱର୍ଣ୍ଣପକ୍ଷ ହଂସ ହୋଇଯାଏ।

## (୪)

ପୃଥିବୀ! ଏତେ ଅନୁଭବରେ ଜୀବନକୁ ଭରିଦେଇଛୁ ଯେ କିଛି ଦେଲୁନାହିଁ ବୋଲି କହିପାରୁନାହିଁ। ଫାଙ୍କ ଫାଙ୍କ କରି ଅନେକ ଚୁଣ୍ଣାମଣା, ଆଉ କେଉଁ ଶୂନ୍ୟସ୍ଥାନ ଭରଣା କରିବାକୁ ତତେ ମାଗିବି ?

ମୋ ହୃଦୟର ବଗିଚାରେ ବହୁ ଅନୁଭବର ଫୁଲଫୁଟା ସ୍ୱାକ୍ଷର। ବହୁ ଅଶ୍ରୁର ମୁକ୍ତା-ମୋତି-ମାଣିକ। ବହୁ କ୍ଷତର ପଦ୍ମରାଗ ସ୍ତବକ। ବହୁ ଭଗ୍ନସ୍ୱପ୍ନର ଝରାପାଖୁଡ଼ାଭିଜା ମହକ। ଆଘାତର କଣ୍ଟକିତ ବୃନ୍ତରେ ବି ତୁ ମଧୁରାନୁଭବର ଫୁଲଟିମାନ ବିଚିତ୍ର ଭାବରେ ଫୁଟାଇଦେଇଛୁ। କେଉଁ ରିକ୍ତତାର କଥା ତତେ କହିବି? ଅପୂର୍ଣ୍ଣତାର କି ଅଭିଯୋଗ ବାଢ଼ିବି ?

ଜୀବନ ଉପରେ ଅଧିକାର ଜାହିର କରିବାପାଇଁ ଯେଉଁ ମରଣ ସମାଗତ ହୋଇଯାଏ, ଇଚ୍ଛାମୃତ୍ୟୁ ରୂପେ ସେଇ ହିଁ ଜୀବନକୁ ତା'ର ଯିବା ସମୟ ଆସିବା ପର୍ଯ୍ୟନ୍ତ ଶରଶଯ୍ୟା ହୋଇ ଧାରଣ କରିରଖେ।

ଗୋଟି ଗୋଟି ହୋଇ ତୋର ବିଷାକ୍ତ ଶରମାନ ବିନ୍ଧିଛନ୍ତି, ମୁହ୍ୟମାନ କରିଛନ୍ତି, ଅଥଚ ମରିପାରିନାହିଁ। ତାକୁହିଁ ମୁଁ ଉପାଧାନ ସଜାଇ ଅନୁଭବର ଶରଶଯ୍ୟାରେ ଶୋଇରହି ଜୀବନ-ମରଣର ଜ୍ୟୋତିର୍ ଲୀଳା ଦେଖିଚାଲିଛି।

ଦେଖିଛି, ସବୁ ଲହରୀ ଗୋଟି ଗୋଟି ଆସି ଚାଲିଗଲେ ବି ସମୁଦ୍ର ଯେତିକି ସେତିକି। ସବୁ ତାରା ଖସି ଖସି ଝଡ଼ିପଡ଼ିଲେ ବି ଆକାଶ ଯେତିକି ସେତିକି। [illegible] ଜୀବନ [illegible] ଅନୁଭବର ଘଟ ପୂରେ। ସବୁ ସ୍ୱାଦୁ ସମାପ୍ତିରେ [illegible]।

[illegible] ବିଚ୍ଛିନ୍ନ ହୋଇପଡ଼ିଥିବା ହୃଦୟର କାଚଖଣ୍ଡମାନ ଝଲିଉଠନ୍ତି [illegible] ହୋଇଥିନ୍ତି, କିଛି ବି ଅନୁଭବ ନିରର୍ଥକ ନୁହନ୍ତି। [illegible] ଅର୍ଥକୁ ଭେଟନ୍ତି। ନିଜର ଅର୍ଥ ଖୋଜିଆଣନ୍ତି।

ମଝି ପୋଖରୀର ତରଂଗକଂପନଟି କୂଳକୁ ଛୁଇଁବନାହିଁ? କିପରି ବିଶ୍ୱାସ କରିବି, ମୋର ସବୁ ଭାବ ଅନୁଭବ ମୋ'ଠାରୁ ଉଦ୍‌ସାରିତ ହୋଇ, କେବଳ ମୋ'ରି ମନଆକାଶରେ ପଦଚାରଣ କରି ଆଉ କୌଣସି ଦିଗନ୍ତ ନପାଇ ପୁଣି ସେମିତି ମୋ ଭିତରକୁ ଫେରିଆସୁଛନ୍ତି? ଧ୍ୱନିର ପ୍ରତିଧ୍ୱନି ଅଛି, ପ୍ରଶ୍ନର ଉତ୍ତର ନାହିଁ? ଭାବନାର ପ୍ରତିଭାବନା ନାହିଁ?

ସବୁ ଫୁଲଂକୁ ପ୍ରଜାପତି ଛୁଏଁନାହିଁ। ସବୁ ଫୁଲ ଦେବତାର ପଦତଳ ପାଏନାହିଁ। ତଥାପି ଗଛ ଫୁଲ ଫୁଟାଇ ଚାଲିଥାଏ କେତେବେଳେ କେଉଁ ଫୁଲଟି ଅକସ୍ମାତ୍ ମାଳିର ଖିଆଲରୁ ଦେବତାର ସାନ୍ନିଧ ପାଇଯିବ ବୋଲି। ମନର ସବୁ ଆଶା ପୂରଣ ହୁଅନ୍ତିନାହିଁ। ସବୁ ସ୍ୱପ୍ନ ସଫଳ ହୁଅନ୍ତିନାହିଁ। ତଥାପି ସ୍ୱପ୍ନ ସରେନାହିଁ। ସ୍ୱପ୍ନଦେଖା ନିରର୍ଥକ ହୁଏନାହିଁ।

ଫୁଲମାନେ ତ ନିଶ୍ଚୟ ଫୁଟିବେ— କୁହୁଡ଼ି ସତ୍ତ୍ୱେ, ଖରା ସତ୍ତ୍ୱେ, ଅନ୍ଧାର ସତ୍ତ୍ୱେ। ଫୁଲମାନେ ତ ଫୁଟିବେ ଅଶ୍ରୁ ଆଉ ସଂତାପ ସତ୍ତ୍ୱେ। ଫୁଟିବାର ସେଇ ନିଛକ ଉଲ୍ଲାସକୁ କିଏ ମନାକରିପାରିବ? ଫୁଲ ଫୁଟାଇବାର ସ୍ୱତଃତାରୁ ଗଛକୁ କିଏ ବଂଚିତ କରିପାରିବ? କାହାର ସମାଦର ମିଳିବନାହିଁ ବୋଲି, ଦେବାସନ ମଣ୍ଡନ ହେବନାହିଁ ବୋଲି, ଗଭାସାଜ କର୍ଣାଲଂକାର ହେବାର ସୌଭାଗ୍ୟ ଜୁଟିବନାହିଁ ବୋଲି ଫୁଲ ଫୁଟିବନାହିଁ? ଫୁଟିବା ତ ତା ପାଇଁ ତା'ର ଏକମାତ୍ର ସାର୍ଥକତା। ତା'ର ସୃଷ୍ଟିରହସ୍ୟ ସକଳ ଅର୍ଥ, ସ୍ରଷ୍ଟାର ସକଳ ସୃଷ୍ଟିକାମନା ସେତିକିରେ ସଂତୃପ୍ତ।

ଅନୁଭବର ଆଖିରେ ପୃଥିବୀର ଦୈନ୍ୟ ଯେତେ ବେଶି ଧରାପଡ଼େ, ତା'ର ଅପାର୍ଥିବତା, ଅସୀମ ପ୍ରତି ଉନ୍ମୁଖତା, ଆକୃତି ପ୍ରୟାସର ଗଳଦ୍‌ଘର୍ମତା ସେତେ ବେଶି ସ୍ପଷ୍ଟ ହୋଇଯାଏ। ମନେହୁଏ, ପୃଥିବୀ ଆପଣାର ଦୈନ୍ୟ ସତ୍ତ୍ୱେ କାହାରିକୁ ଦୀନ କରି ରଖେନାହିଁ।

ଏ ଅନ୍ନପୂର୍ଣା ଜଗଦ୍ଧାତ୍ରୀ ମାହେଶ୍ୱରୀ ଆବିର୍ଭାବ ପରେ ଧରଣୀ ଆଉ ଅପୂର୍ଣ ହୋଇ ରହେନାହିଁ। ବରଂ ଜୀବନକୁ ପୂର୍ଣ କରିଦେବାର ପ୍ରତ୍ୟାଶାଜଡ଼ିତ ଲୋଭାବରଣଟି ପୃଥିବୀ ଦେହରୁ ଖସିପଡ଼େ, ଜୀବନର ଖୋଲା ଆଖି ଓ ପୃଥିବୀର ଖୋଲା ଦେହ; ଏ ବେଳେ ପୃଥିବୀ ଆଉ ବ୍ୟକ୍ତିଙ୍କୁ ଦେଖେନାହିଁ। ନିଜେ ବ୍ୟକ୍ତିର ଦର୍ଶନୀୟ ହୋଇଯାଏ। ପୃଥିବୀ ଯେ ଏକାଧାରରେ ଏକ ସଦ୍ୟୋଜାତ ଶିଶୁ, ଚିରକିଶୋରୀ, ନିତ୍ୟନବୀନା ଓ ପୁରାଣୀ ପ୍ରବୀଣା! ବୟସର ସବୁ ରହସ୍ୟ ଅନାବୃତ ହୋଇଯିବାର ମୁହୂର୍ତ୍ତରେ ଜୀବନ ପୃଥିବୀର ପ୍ରେମିକ ପାଲଟିଯାଏ।

× × × ×

ବଡ଼ ବିଚିତ୍ର ଭାବରେ ମୁଁ ଏବେ ସେଇ ବୟସକୁ ଫେରିଆସିଛି, ଯେଉଁଠି ଏକ ଆତ୍ମତୃପ୍ତ ଏକାଦଶବର୍ଷୀ ବାଳିକା-ସତ୍ତାଟି ପାଖରେ ଆକାଶ-ପୃଥିବୀର ସକଳ

ଐଶ୍ୱର୍ଯ ବିଂଚିହୋଇପଡ଼ିଛି। ଗୋଟାଇ ଆଣି ପେଡ଼ିରେ ସାଇତି ରଖିବା ଦରକାର ପଡୁନାହିଁ। ସେ ଏ ରାଜ୍ୟର ବାଦ-ବିରୋଧହୀନା ଅପ୍ରତିଦ୍ୱଂଦ୍ୱିନୀ ସାମ୍ରାଜ୍ଞୀ – ଯେଉଁଠି ମନ ଚସିପଡ଼ି ସାଧବବୋହୂର ପଦଚିହ୍ନ ଦେଖିପାରେ। ପ୍ରଜାପତି ପରକୁ ସାଉଁଳାଇ ଦେଇପାରେ। ଫୁଲକୁ ଗେଲ କରି ଚଢ଼େଇ ସହ କଥା ହୋଇପାରେ। ନଈପାଣିରେ କାଗଜଡଂଗା ଭସାଇଦେଇ ଘାସର ଛାତିରେ ମୁହଁ ଗୁଜିଂପାରେ।

ପୃଥିବୀ ଜନ୍ମକାଳରୁ ମୋର ବୋଝ ବହନ କରିଆସିଛି। ପୃଥିବୀକୁ ଦେହଭାରା ଅଜାଡ଼ିଦେଇଥିଲି। ଏବେ ଆକାଶକୁ ସ୍ୱପ୍ନସଂଭାରମାନ ଫିଙ୍ଗିଦେଲି। ମୁଁ ଏବେ ଭାରଶୂନ୍ୟ।

ମତେ ବିପୁଳ ସ୍ନେହରେ କୋଳାଗ୍ରତ କରି ରଖିଛି ଧରିତ୍ରୀ। ପରମ ଆବେଗରେ ମୋର ଭାବନା, ସ୍ୱପ୍ନକୁ ଆଉଁସିଦେଉଛି ଆକାଶ। ଅସଚେତନ ଭାବେ ପୃଥିବୀ ଉପରେ ନିଜର ଭାର ଲଦିଦେଇଥିଲି। ଏବେ ସଚେତନତାର ବୋଝ ଆକାଶକୁ ସମର୍ପିଦେଲି।

ମାଟି ଆକାଶର ଏଇ ଯେ ମୋର ବୋଝବୁହା – ସେମାନଙ୍କର, ମୋ ସୃଷ୍ଟି ବେଳାର କେଉଁ ସ୍ୱପ୍ନକୁ ମୁଁ ଚରିତାର୍ଥ କରିଚି ବୋଲି ?

ଏ ପୃଥିବୀକୁ କୁଣ୍ଢାଇଧରି ଗେହ୍ଲା କରିବାକୁ ଇଚ୍ଛା ହେଉଛି। ଭଲପାଇବାର ଗୀତ ଗାଇବାକୁ ଇଚ୍ଛା ହେଉଛି। କହିବାକୁ ଇଚ୍ଛା ହେଉଛି, ପୃଥିବୀ ତୁ କେଡ଼େ ଅକୃପଣ। ସୁଖ ହେଉ ବା ଦୁଃଖ ହେଉ, ଅନୁଭବର ଲଂବା ଦଉଡ଼ି ଧରି ସେମାନଙ୍କୁ ମାପିନେବାକୁ ତୁ ତୋର ସମୁଦାୟ ଛାତି ପାତିଦେଇଛୁ। କେତେ କମ୍ ଦିନର ଏ ବଂଚିବା, ତଥାପି ସେ ବଂଚିବାକୁ ସାର୍ଥକ କରିବାକୁ ତୋର କି ସୁବିପୁଳ ଆୟୋଜନ !

ଏ ପୃଥିବୀ ଚମତ୍କାର, ଯେଉଁଠି ହିଂସାଦ୍ୱେଷର ନର୍ଦ୍ଦମା ଶ୍ରଦ୍ଧାର ଜାହ୍ନବୀରେ ରୂପାନ୍ତରିତ ହେବାର ଅବକାଶ ଲାଭକରନ୍ତି। ଯେଉଁଠି ଦୁଃସହ ଶରଶଯ୍ୟାର ଦୁର୍ବାର ତୃଷାନଳ ଶାନ୍ତ କରିବାକୁ ଧନୁହସ୍ତ ସମୁଦ୍ୟତ ହୋଇଯାଏ। ଯେଉଁଠି ଲଜ୍ଜାପମାନ ଓ ଲାଂଛନାର ସହସ୍ର ହସ୍ତ ବିଡ଼ଂବିତା ନାରୀତ୍ୱ ପାଇଁ ସହୃଦୟତାର କୋଟି ବସ୍ତ୍ର ଲଂବିଆସେ।

ସେ ପୃଥିବୀ ଅନୁପମା – ଯେଉଁଠି ଛଳନା ଓ ପ୍ରଲୋଭନମାନେ ପ୍ରାଣକୁ ଅନ୍ଧକାମନାର ଗଳିକନ୍ଦିକୁ ଘୋଷାଡ଼ି ନେବାବେଳେ, ନିର୍ଦ୍ଦୟ ଅହଂକାର ଜୀବନକୁ ରୁଦ୍ର ଅଭିଶାପର ପଥର ବୋଝ ତଳେ ଚାପି ଦେବା ବେଳେ ପରମ ପ୍ରେମ ମଧୁର ମୋହନ ରୂପ ଧରି ପୁଣି ତାକୁ ଜୀବନର ମହାମହିମାରେ ପ୍ରତିଷ୍ଠିତ କରିଦିଏ।

ହୃଦୟରେ ଏଭଳି ସ୍ଥଳ ଅଛି ଯେଉଁଠି ସବୁ ବିଷ ଅମୃତରେ ବଦଳିଯାଇପାରେ।

ମୁଁ ଜାଣିଛି, ଛାତିରେ ଛାତିଏ ଭଲପାଇବା ନେଇ ହିଁ ମୁଁ ମରିବି। ଏ ପୃଥିବୀକୁ ଭଲନପାଇ ରହିହେବନାହିଁ। ସବୁ ଦୁଃଖ କଷ୍ଟ, ଆଘାତ ଯଂତ୍ରଣା ଓ ନିଗ୍ରହ ସତ୍ତ୍ୱେ ଏ ପୃଥିବୀ ମୋର ପ୍ରିୟସ୍ଥଳୀ। 'ପ୍ରିୟତା'କୁ ଉଦ୍‌ବୋଧିତ କରିଦେବାର ଏ ଧରଣୀକୁ କେମିତି ଭଲ ନପାଇ ରହିହେବ ତା ମୁଁ ଜାଣିପାରିଲିନାହିଁ।

ଧ୍ୱଂସ ତ ରକ୍ତବୀଜ। ପ୍ରଳୟର ନୃତ୍ୟ ଅହୋରାତ୍ର। ତଥାପି ତା ଭିତରେ ସୃଜନର ସ୍ୱପ୍ନ ଟିକକ କି ସଂତର୍ପଣ ସଂଗୋପନରେ ନିଜର ମଧୁରତା ଟିକକ ବାଢ଼ିଚାଲିଛି, ସେକଥା ପୃଥିବୀ ବିନା ଆଉ କେଉଁଠି ଆବିଷ୍କୃତ ହୋଇପାରନ୍ତା ?

ଏ ପୃଥିବୀକୁ ମୁଁ ଏମିତି ଆବିଷ୍କାର କରିଚାଲୁଥାଏ। ଭଲପାଇ ପାରୁଥାଏ। ସେ ଭଲପାଇବାକୁ ବୁଝିବା ପାଇଁ ପୃଥିବୀର ଟିକେ ହୃଦୟ ରହିଥାଉ, ପୃଥିବୀର ମୋ ପାଇଁ ଟିକେ ସମୟ ରହିଥାଉ !

□ □ □

୧୯୮୬ – କଟକ।

ଐଶ୍ୱର୍ଯ୍ୟ ବିଂଚିହୋଇପଡ଼ିଛି। ଗୋଟାଇ ଆଣି ପେଡ଼ିରେ ସାଇତି ରଖିବା ଦରକାର ପଡୁନାହିଁ। ସେ ଏ ରାଜ୍ୟର ବାଦ-ବିରୋଧହୀନା ଅପ୍ରତିଦ୍ୱଂଦ୍ୱିନୀ ସାମ୍ରାଜ୍ଞୀ – ଯେଉଁଠି ମନ ବସିପଡ଼ି ସାଧବବୋହୂର ପଦଚିହ୍ନ ଦେଖିପାରେ। ପ୍ରଜାପତି ପରକୁ ସାଉଁଳାଇ ଦେଇପାରେ। ଫୁଲକୁ ଗେଲ କରି ଚଢ଼େଇ ସହ କଥା ହୋଇପାରେ। ନଈପାଣିରେ କାଗଜଡଂଗା ଭସାଇଦେଇ ଘାସର ଛାତିରେ ମୁହଁ ଗୁଞ୍ଜିପାରେ।

ପୃଥିବୀ ଜନ୍ମକାଳରୁ ମୋର ବୋଝ ବହନ କରିଆସିଛି। ପୃଥିବୀକୁ ଦେହଭାରା ଅଜାଡ଼ିଦେଇଥିଲି। ଏବେ ଆକାଶକୁ ସ୍ୱପ୍ନସଂଭାରମାନ ଫିଙ୍ଗିଦେଲି। ମୁଁ ଏବେ ଭାରଶୂନ୍ୟ।

ମତେ ବିପୁଳ ସ୍ନେହରେ କୋଳାଗ୍ରତ କରି ରଖିଛି ଧରିତ୍ରୀ। ପରମ ଆବେଗରେ ମୋର ଭାବନା, ସ୍ୱପ୍ନକୁ ଆଉଁସିଦେଉଛି ଆକାଶ। ଅସଚେତନ ଭାବେ ପୃଥିବୀ ଉପରେ ନିଜର ଭାର ଲଦିଦେଇଥିଲି। ଏବେ ସଚେତନତାର ବୋଝ ଆକାଶକୁ ସମର୍ପିଦେଲି।

ମାଟି ଆକାଶର ଏଇ ଯେ ମୋର ବୋଝବୁହା – ସେମାନଙ୍କର, ମୋ ସୃଷ୍ଟି ବେଳାର କେଉଁ ସ୍ୱପ୍ନକୁ ମୁଁ ଚରିତାର୍ଥ କରିବି ବୋଲି ?

ଏ ପୃଥିବୀକୁ କୁଣ୍ଢାଇଧରି ଗେହ୍ଲା କରିବାକୁ ଇଚ୍ଛା ହେଉଛି। ଭଲପାଇବାର ଗୀତ ଗାଇବାକୁ ଇଚ୍ଛା ହେଉଛି। କହିବାକୁ ଇଚ୍ଛା ହେଉଛି, ପୃଥିବୀ ତୁ କେଡ଼େ ଅକୃପଣ। ସୁଖ ହେଉ ବା ଦୁଃଖ ହେଉ, ଅନୁଭବର ଲଂବା ଦଉଡ଼ି ଧରି ସେମାନଙ୍କୁ ମାପିନେବାକୁ ତୁ ତୋର ସମୁଦାୟ ଛାତି ପାତିଦେଇଛୁ। କେତେ କମ୍ ଦିନର ଏ ବଂଚିବା, ତଥାପି ସେ ବଂଚିବାକୁ ସାର୍ଥକ କରିବାକୁ ତୋର କି ସୁବିପୁଳ ଆୟୋଜନ !

ଏ ପୃଥିବୀ ଚମତ୍କାର, ଯେଉଁଠି ହିଂସାଦ୍ୱେଷର ନର୍ଦ୍ଦମା ଶ୍ରଦ୍ଧାର ଜାହ୍ନବୀରେ ରୂପାନ୍ତରିତ ହେବାର ଅବକାଶ ଲାଭକରନ୍ତି। ଯେଉଁଠି ଦୁଃସହ ଶରଶଯ୍ୟାର ଦୁର୍ବାର ତୃଷାନଳ ଶାନ୍ତ କରିବାକୁ ଧନୁର୍ହସ୍ତ ସମୁଦ୍ୟତ ହୋଇଯାଏ। ଯେଉଁଠି ଲଜ୍ଜାପମାନ ଓ ଲାଂଛନାର ସହସ୍ର ହସ୍ତ ବିଡ଼ଂବିତା ନାରୀତ୍ୱ ପାଇଁ ସହୃଦୟତାର କୋଟି ବସ୍ତ୍ର ଲଂବିଆସେ।

ସେ ପୃଥିବୀ ଅନୁପମା – ଯେଉଁଠି ଛଳନା ଓ ପ୍ରଲୋଭନମାନେ ପ୍ରାଣକୁ ଅନ୍ଧକାମନାର ଗଳିକନ୍ଦିକୁ ଘୋଷାଡ଼ି ନେବାବେଳେ, ନିର୍ଦ୍ଦୟ ଅହଂକାର ଜୀବନକୁ ରୁଦ୍ର ଅଭିଶାପର ପଥର ବୋଝ ତଳେ ଚାପି ଦେବା ବେଳେ ପରମ ପ୍ରେମ ମଧୁର ମୋହନ ରୂପ ଧରି ପୁଣି ତାକୁ ଜୀବନର ମହାମହିମାରେ ପ୍ରତିଷ୍ଠିତ କରିଦିଏ।

ହୃଦୟରେ ଏଭଳି ସ୍ଥଳ ଅଛି ଯେଉଁଠି ସବୁ ବିଷ ଅମୃତରେ ବଦଳିଯାଇପାରେ।

ମୁଁ ଜାଣିଛି, ଛାତିରେ ଛାତିଏ ଭଲପାଇବା ନେଇ ହିଁ ମୁଁ ମରିବି। ଏ ପୃଥିବୀକୁ ଭଲନପାଇ ରହିହେବନାହିଁ। ସବୁ ଦୁଃଖ କଷ୍ଟ, ଆଘାତ ଯଂତ୍ରଣା ଓ ନିଗ୍ରହ ସତ୍ତ୍ୱେ ଏ ପୃଥିବୀ ମୋର ପ୍ରିୟସ୍ଥଳୀ। 'ପ୍ରିୟତା'କୁ ଉଦ୍‌ବୋଧିତ କରିଦେବାର ଏ ଧରଣୀକୁ କେମିତି ଭଲ ନପାଇ ରହିହେବ ତା ମୁଁ ଜାଣିପାରିଲିନାହିଁ।

ଧ୍ୱଂସ ତ ରକ୍ତବୀଜ। ପ୍ରଳୟର ନୃତ୍ୟ ଅହୋରାତ୍ର। ତଥାପି ତା ଭିତରେ ସୃଜନର ସ୍ୱପ୍ନ ଟିକକ କି ସଂତର୍ପଣ ସଂଗୋପନରେ ନିଜର ମଧୁରତା ଟିକକ ବାଢ଼ିଚାଲିଛି, ସେକଥା ପୃଥିବୀ ବିନା ଆଉ କେଉଁଠି ଆବିଷ୍କୃତ ହୋଇପାରନ୍ତା ?

ଏ ପୃଥିବୀକୁ ମୁଁ ଏମିତି ଆବିଷ୍କାର କରିଚାଲୁଥାଏ। ଭଲପାଇ ପାରୁଥାଏ। ସେ ଭଲପାଇବାକୁ ବୁଝିବା ପାଇଁ ପୃଥିବୀର ଟିକେ ହୃଦୟ ରହିଥାଉ, ପୃଥିବୀର ମୋ ପାଇଁ ଟିକେ ସମୟ ରହିଥାଉ !

□ □ □

୧୯୮୬– କଟକ।